# ମନ୍ତ୍ର

(କବିତା ସଂକଳନ)

କାନନ ମିଶ୍ର

ପ୍ରକାଶିକା
ଶ୍ରୀମତୀ ରାଧାରାଣୀ ପଣ୍ଡା
ଭୁବନେଶ୍ୱର - ୧୪

# ମନ୍ତ୍ର
(କବିତା ସଂକଳନ)

# MANTRA
(A collection of poems)

ଲେଖିକା
**କାନନ ମିଶ୍ର**

Author :
**Kanan Mishra**

ପ୍ରଥମ ପ୍ରକାଶ
ନୂଆବର୍ଷ - ୨୦୦୯

First Edition :
New Year - 2009

ପ୍ରକାଶିକା
**ଶ୍ରୀମତୀ ରାଧାରାଣୀ ପଣ୍ଡା**
୨୦, ଲୁଇସ୍ ରୋଡ୍, ଫାଷ୍ଟ୍ ଲେନ୍
ରବି ଟକିଜ୍ ସ୍କୋୟାର,
ଭୁବନେଶ୍ୱର - ୧୪
ଫୋନ୍ : ୨୪୩୧୮୧୯

Published by :
**SMT. RADHARANI PANDA**
20, Lewis Road, First Lane
Ravi Talkies Square,
Bhubaneswar - 14
Ph. : 2431819

ଅକ୍ଷର ବିନ୍ୟାସ ଓ ମୁଦ୍ରଣ
**ଶ୍ରଦ୍ଧାଞ୍ଜଳି**
ରାମେଶ୍ୱର ପାଟଣା, ଭୁବନେଶ୍ୱର

Page Layout & Printed at
**Shradhanjali**
Rameswarpatana,
Bhubaneswar

ମୂଲ୍ୟ ଟ ୭୦/-

Price : Rs. 70/-

# ସୂଚୀପତ୍ର

## ପ୍ରଥମ ସ୍ତବକ

(ଚୌପଦୀ)

॥ ୧ ॥

ସମାଧିରେ ମୋର ଫୁଲ ଦବନାଇଁ ଦବନି ଗଜରା ହାର
ପଥରବେଦୀରେ ଘିଅ ଦୀପ ଜାଳି ଢାଳିବନି ଲୁହ ଧାର
ମରଣଶୀଳ ଏ ମାଟିରେ ମରଣ ପାରିବନି ମତେ ଛୁଇଁ
ମୋ ହାତର ଲେଖା କବିତା ଭିତରେ ବଞ୍ଚି ରହିବି ମୁହିଁ ।

॥ ୨ ॥

ନାଗଫେଣୀ ବନ ଛାଇ ହୋଇଯାଏ କଦବା କେମିତି ଫୁଲେ
କଣ୍ଟକ ଭେଦି ପରାଗପଖଳା ପାଖୁଡ଼ା ପବନେ ଝୁଲେ
ନିଠୁରତା ତମେ ଯେତେ ବି ଦେଖାଅ ମିଛ ବୋଲି ତାକୁ ମଣି
ଫୁଲ ଫୁଟିବାର ଲଗ୍ନ ପାଇଁକି ଦିନ ଯାଉଅଛି ଗଣି ।

॥ ୩ ॥

ଫାଳିକିଆ ଜହ୍ନ ଆଖିମାରେ ଦେଖ ଅଁ'ଳା ଗଛର ଉହାଡେ
କୁହୁଡି ଛାଇଛି ବନେବନେ ଦୂର ଦିଗ୍‌ବଳୟର ପାହାଡେ
ଅଳି ମୋର ମତେ ଜହ୍ନ ଆଣି ଦିଅ କରିବି ମଥାର ଟିକିଲି
କୁହେଳି ସାଉଁଟି ଝୀନ ଉତ୍ତରୀ ବୁଣିଦେବ କହି ରଖିଲି ।

।। ୪ ।।

ସିଏ କି ଆକାଶ ଗୋଧୂଳିରେ ଯିଏ ରଂଗ ଧରେନି ପାଟଳ
ସିଏ କି ସୁମନ ପାଖରେ ଯାହାର ଭ୍ରମର କରେନି କଟାଳ
ସିଏ କି ଝରଣା ଶୁଣାଏନି ଯିଏ କୁଳୁକୁଳୁ ମଧୁ ରାଗିଣୀ
ସିଏ କି ମଣିଷ ହୃଦୟେ ଯାହାର ପ୍ରୀତିର ପୁଲକ ଜାଗିନି ।

।।୫।।

ତୁମ ବଗିଚାରେ ଚଂପା ଫୁଟିଲେ ମୋ ଘରେ ମହକ ଛୁଟେ
ତୁମ ଅଗଣାରେ ଫଗୁଣ ଆସିଲେ ଘରେ ମୋ ବଉଳ ଫୁଟେ
ଖୁସି ଲାଗେ ତୁମ ପତ୍ନୀର ପାଦେ ରୁଣୁଝୁଣୁ ଯେବେ ମଲ
କାହିଁକିନା କେବେ ଦିନେ ମୁଁ ତୁମକୁ ପାଇଥିଲି ଭାରି ଭଲ ।

।। ୬ ।।

ଲତା ପରି ଥିଲି ଛାତିକୁ ଆଉଜି ଭଲ ପାଇଥିଲି ବୋଲି
ତୁମେ ଧରିନେଲ ଆଶ୍ରୟହୀନା, ପ୍ରସାରିଚି ମୋର ଝୋଲି
ଓଠ ଛାପ ମୋର ଦଲିଲ୍‌ରେ ତୁମ ନଥିଲା ହସ୍ତାକ୍ଷର
ପ୍ରଭୁ ନୁହଁ ତୁମେ, ଦାସୀ ନୁହେଁ ମୁଁ' କହିବି ବା କେତେ ଥର ?

॥୮॥

ସେ କେଉଁ କବିତା ପଢ଼ିଲେ ଯାହାକୁ ନୂପୁର ବାଜେନି ମନେ
ସେ କେଉଁ ବାଦଲ ଦେଖିଲେ ଯାହାକୁ ମୟୂରୀ ନାଚେନା ବନେ
କିଭଳି ପ୍ରେମ ସେ ଯାହାପାଇଁ ବେନି ଚରଣ କରେନି ପାର
କଣ୍ଟକବନ, ପରୁଆ ନକରି ଆଘାତ, ରୁଧିର ଧାର ।

॥ ୯ ॥

ବାଟ ଭାଙ୍ଗିଦେଇ ଅପସରିଗଲ, ବେଶ୍ କଲ ବେଶ୍ କଲ
ଏତେ ଦିନକରେ ପାଗଳାମି ମୋର ହୋଇଗଲା ପୂରା ଭଲ
ମିଛଟାରେ ଆଉ ତାରାଫୁଲ ଫୁଟା ନେଳିଆ ଆକାଶ ଛାତି
ହାଲୋଳ କରା ସେ ଇନ୍ଦ୍ରଧନୁକୁ ଦେଖେ ନାହିଁ ଦିନରାତି ।

॥୧୦॥

କେଉଁଠୁ ଆସିଲେ କିବା ପରିଚୟ କାହିଁ ବା ତୁମର ଗାଆଁ
ଜାଣିବା ପାଇଁକି ଚାହେଁନି, ଚାହେଁନି ଜାଣିବାକୁ ସୁଦ୍ଧା ନାଆଁ
ଜାଣିବାକୁ ଚାହେଁ କେବଳ ଏତିକି ଭଲପାଇ ପାରିବ କି ?
ପାଗଳ ପରିକା, ପିୟାସୀ ତୁମର ବାହୁରେ ଆବୋରି ରଖି ।

|| ୧୧ ||

ହାତ ପତାଇଲି, ଧରିନେଲ ତୁମେ ଭିକ୍ଷାମାଗୁଛି ବୋଲି
ଅଞ୍ଜଳି ଭରି ମୁକୁତା ଢାଳିଲ ମଂଜୁଷା ତୁମ ଖୋଲି
ଏଡେ ବୋକା, ବୁଝି ପାରିଲନି ତୁମ ସଂପଦେ ନାହିଁ ଲୋଭ
ମାଗୁଥିଲି ଶ୍ୟାମ କରପଲ୍ଲବ, ଦେଲନି ଏଇ ଯା କ୍ଷୋଭ ।

|| ୧୨ ||

ଦିନର ଗହଣା ରୂପେଲୀ ସୂରୁଜ ରାତିର ଗହଣା ଜହ୍ନ
ବସୁଧା ଗହଣା ଗୋଲାପି କୁସୁମେ ଝଲମଲ ଉପବନ
ନଈର ଗହଣା ଝିକିମିକି ଚାନ୍ଦି ମୀନ ସଜା ମଣିହାର
ସବୁଠୁ ଦାମିକା ଗହଣା ତମେ ମୋ, ସବୁରି ଭିତରେ ସାର ।

|| ୧୩ ||

ତୁମେ ଯେବେ ତୁମ ବାହୁରେ ଆବୋରି ପ୍ରୀତିର ପୁଲକ ଦିଅ
ଭାବେ ମହୁପରି ତରଳି ଭିଜାଇ ପାରନ୍ତିକି ତମ ଦିହ
ଯେତେ ତିକ୍ତତା, ଯେତେ ଶୁଷ୍କତା ରଖିଚ ପୁଞ୍ଜି କରି
ପୋଛିକି ପାରନ୍ତି ପରଶରେ ମୋର ଜୀବନ ଯାଆନ୍ତା ତରି ।

|| ୧୪ ||

ପଉଷ ସକାଳେ କାକରବିନ୍ଦୁ ଝିକିମିକି ଝିକିମିକି
ସେବତୀବୁଦାରେ ହଳଦୀଗାଧୁଆ ଚାରୁଫୁଲ ଟିକିଟିକି
ଶୀତ ଆସିଗଲା, ଅଜବ କଥା ଏ ରେଳେଇ ହେଲାନି ଖୋଲା
ପାଶେ ଅଛ ବୋଲି ଉଷ୍ମ ଶିଶିର ସତେ କି ଦେହରେ ବୋଳା ।

|| ୧୫ ||

ମନ୍ଦିର ଗଲି, ମସ୍‌ଜିଦ୍ ଗଲି, ଆହୁରି ଗଲି ଯେ ଗୀର୍‌ଜା
ଦେଶ ଦେଶ ବୁଲି ଭେଟିଲି ପାଦ୍ରୀ, ପୁରୋହିତ ଆଉ ମୀର୍‌ଜା
ଜାଣିପାରିଲିନି ତମେ ଥିଲ ଏଇ ଫୁଲରେ, ଫଳରେ, ଘାସରେ
ଜାଣିପାରିଲିନି ତୁମେ ଥିଲ କୁନି ଅବୋଧ ଶିଶୁର ହାସରେ ।

|| ୧୬ ||

କଅଣ କରିବି ଜୀବନ ନେଇକି କଅଣ କରିବି ସତେ
ନିଶିଦିନ ଧରି ଭାବନା ଯେବେ ଏ ଅଥୟ କରିଲା ମତେ
ହଠାତ୍ ଶୁଭିଲା, ରାଜପଥ ଧାରେ ରୋପିଯାଅ ଦୁବଘାସ
ଶୁକ୍ଳ ତିଥିରେ ଜ୍ୟୋତ୍ସ୍ନାବତୁରା ବାଟରେ ଚାଲିକି ଆସ ।

।। ୧୭ ।।

ମହମ ତରଳେ ଟୋପି ଟୋପି ଯଦି ପାଶେ ତା ଉଷୁମ ଶିଖା
ବରଫ ତରଳେ କିରଣ ତାତିରେ, ପାଣି କମେ ଫିକା ଫିକା
ଲହୁଣୀ ତରଳେ ନିମିଷକେ ଯଦି ପାଏ ସେ ନିଆଁର ଧାସ
ମାନିନୀ ମନ ମୋ ତରଳେ ଯେଦିନ ବାଟଭୁଲି ତମେ ଆସ ।

।। ୧୮ ।।

ସେଦିନର ସେଇ ମେଘ ଡମ୍ବରୁ ଝଡବିଦ୍ୟୁତ୍ ରାତିରେ
ବରଷାରେ ଭିଜି ଆସିଥିଲ ତମେ, ସପନ ସଜାଇ ଛାତିରେ
ବାତାୟନେ କଲ ଆଘାତ, ଭାବିଲି ଝଡ ବା କରୁଛି ଶବ୍ଦ
ନିବୁଜ ଦୁଆରୁ ଫେରିଗଲ ଆଜି ଅନୁତାପେ ମୁଁ ଯେ ଦଗ୍ଧ ।

।। ୧୯ ।।

ବାଟ ଭାଙ୍ଗିଯିବ ଅଧା ରାସ୍ତାରୁ ଏମିତି କଥା ତ ନଥିଲା
ପାଶୋରି ଯାଇଛ ପ୍ରୀତିପାର୍ବଣେ ଯେ କେତୋଟି ଦିନ ବିତିଲା
ଯିବ ଯଦି ଯାଅ, ଜାଣେ ମୁଁ ଫେରିବ ସପନ କରି ମୋ ସାକାର
ଘୂରି ଘୂରି ଦିନେ, ବର୍ତ୍ତୁଳ ଯେଣୁ ଅଟେ ଏ ପୃଥିବୀ ଆକାର ।

।। ୨୦ ।।

ଚକ ବୁଲୁଥିଲେ ଅଖବୁଲୁଥାଏ ବୁଲିପଡୁଥାଏ ପହି
କିଏ ଯେ କାହାକୁ ଛୁଇଁଯାଏ ଏଠି, କିଛି ତ ନୁହଁଇ କହି
'ବେକାର ବଞ୍ଚିଲି' କହିଲି ଯେଦିନ ସହସା ଲାଳନ କରା
ଲତାଟି କହିଲା ତୋ' ଲାଗି ଆଜି ବାସନା ବିତରେ ପରା ।

।। ୨୧ ।।

ରାଜପଥ ଧାରେ ବିପଣୀର ମେଳା ଜକମକ ଜକମକ
ସଉଦାଗରକୁ କହିଲା ଶତେକ କନକମୁଦ୍ରା ରଖ
ବଦଳରେ ଦିଅ ବିତିଲା ସମୟ, କାଲିର ଦିନଟି ଭାଇ
ଶୁଣିଲି 'ଏଇଠି ସବୁ ମିଳେ, ସେଇ ଗୋଟିକ ଦରବ ନାହିଁ ।'

।। ୨୨ ।।

ବସୁଧାବୁକୁରୁ ନିଘନ ତମସା ଦୂର କରିବାର ନିଶା
ନେଇକି ସବିତା ଝଲମଲ କରେ ନିଇତି ପୂରୁବ ଦିଶା
ଗୋଧୂଳି ଗ୍ରାସିଲେ ଛପିଯାଏ, ହେଲେ ପରଦିନ ଆସେ ଫେରି
'ନିଷ୍ଠା' ଶବଦ ଅର୍ଥ ବୁଝାଏ କିରଣ ତା କେରି କେରି ।

॥ ୨୩ ॥

ଆଜିର କାମଟି ସରିଯାଉ କାଲି ଆରାମ କରିବି ଭାବି
ଦିନ ଦିନ ହୋଇ ବରଷ ବିତିଲା, ଜୀବନ ଘଡିରୁ ଚାବି
ସରି ଆସେ ଯେବେ, ଆଖି ଖୋଲି ଦେଖେ ଆରାମ ହେଲାନି କରି
ବେକାର କାମରେ ଜୀବନ ବିତିଲା ବେଳ ଆସେ ସରି ସରି ।

॥ ୨୪ ॥

ମେଘ ଲେଖିଯାଏ ଆକାଶେ କବିତା ଗୀତ ଗାଇ ଯାଏ ବାଆ
ମଉସୁମୀ ଫୁଲ ଗପ କହିଯାଏ ଛାଇଲେ ଶୀତର ମାୟା
ମାଟିର ମଣିଷ ଉପନ୍ୟାସ ରଚେ ନିତିଦିନ ଥାଏ ଦେଖି
କାଗଜ ଫରଦେ ଧରିକି ବସିଛି ଧାଡିଏ ପାରେନି ଲେଖି ।

॥ ୨୫ ॥

ଭଲପାଇଥିଲି, ଚଲାପଥେ ତେଣୁ ହାତ ତୁମ ଥିଲି ଧରି
ତୁମେ ଭାବିନେଲ ଆତ୍ମାକୁ ମୋର ଦେଇଛି ନିଲାମ କରି
ଭଲ ପାଇଥିଲି, ସେ ଲାଗି ପିନ୍ଧିଲି କୋଟିକମ କରା ମଲ
ତୁମେ ଭାବିନେଲ ବେଡି ବୋଲି ତାହା ଭୁଲ୍ କଲ, ଭୁଲ କଲ ।

।। ୨୬ ।।

ଝରିବନି ଯଦି ପତ୍ର, ଗଛଟି କୁଆଁ ମେଲିଦେବ କେମିତି
ଗ୍ରୀଷ୍ମ ନହେଲେ କେମିତି ଆଷାଢ ରଚିବ ମେଘର ଜ୍ୟାମିତି
ରାତି ନଆସିଲେ କେମିତି ଉଇଁବ ଉଷାର ନାରଙ୍ଗୀ ସବିତା
ବିରହ ନହେଲେ ଲେଖିପାରିବିକି ସଫଳ ପ୍ରେମର କବିତା ?

।। ୨୭ ।।

ଘରଠୁ ଦେଉଳ ଦୂର ବୋଲି ଢାଳେ ଅପରାଜିତାରେ ଜଳ
ନିଷ୍ଠାର ସହ ରୁଟି ଗଢ଼େ, ଲେଖେ କବିତା ପାଇଲେ ବେଳ
ଘରଠୁ ଦେଉଳ ଦୂର, କପୋତକୁ ଦାନାଦିଏ ତେଣୁ ନିତି
ଯୋଗୀର ଥାଳରେ ଅନ୍ନ ପରଶେ, ଏଇ ମୋ ପୂଜାର ରୀତି ।

।। ୨୮ ।।

ଦିଗ୍‌ବଳୟକୁ ଛୁଇଁବାପାଇଁକି ସ୍ପର୍ଦ୍ଧା ରଖଇ ମନେ
ବହପ କରେ ମୁଁ ଘୂରିବା ପାଇଁକି ନନ୍ଦନ ଫୁଲବନେ
ବିନା ତୂଳୀ ମୁଁ ଯେ ଆଙ୍କିପାରଇ କେତେ ପ୍ରୀତିମୟ ଛବି
ତୁମେ କହିଥାଅ ପାଗଳ, କିନ୍ତୁ ନିଜକୁ କହେ ମୁଁ କବି ।

।। ୨୯ ।।

ଝଡ ଓ ବର୍ଷା ଅଛି ବୋଲି ଅଛି ଇନ୍ଦ୍ରଧନୁର ଝଲକ
ପଙ୍କ ରହିଚି ବୋଲି ପଙ୍କଜ ସକାଳେ ମେଲାଏ ପଲକ
ଅନ୍ଧାର ଅଛି ବୋଲିକି ରହିଛି ସାଦାଜ୍ୟୋତ୍ସ୍ନାର ଫୁଆର
ଦୁଃଖ ଅଛି ବୋଲି ସୁଖ ପଶିଆସେ ଟପିକି ମୋ ଖୋଲା ଦୁଆର ।

।। ୩୦ ।।

ଝଲସିବି ଦିନେ ସରଗଦୁଆର ଦାଉଦାଉ ରଡ ନିଆଁରେ
ପଳପଳ କରି କୁହୁଳିବି କିଆଁ ଯାତନା ପାଇକି ହିୟାରେ
କେତେଦିନ ଆଉ ଡରିକି ରହିବି ମନରେ ପକାଇ ଶିକୁଳି
ନିଡର୍ ହେଇକି ମୁକାବିଲା ଏବେ କରିବି ଭୟରୁ ମୁକୁଳି ।

।। ୩୧ ।।

ସିଏ କି ଜହ୍ନ ନ ଅଛି ଯଦି ତା ଦେହରେ କାଳିମା ରେଖା
ସିଏ କି ଗୋଲାପ କଣ୍ଟକ ଯଦି ବୃନ୍ତେ ଦେଇନି ଦେଖା
ପାଷାଣ ଚିରିକି ନବହିଛି ଯଦି ସିଏ ଅବା କେଉଁ ନଦୀ
ସିଏ କି କବିତା ମର୍ମଦାହରୁ ଜନ୍ମ ନେଇନି ଯଦି ।

॥ ୩୨ ॥

ମହୁମାଛି କହେ କାମ କରିଯାଅ, ନଈ କହେ ଆଗେ ବଢ
ଦୂବଘାସ କହେ ଜମିରହିଥାଅ ବର୍ଷା ଆସୁ ବା ଝଡ
ଫୁଲ କହେ ତୁମ ପାଇଁ ବସିଯାଉ ଧରାରେ ଛବିଳ ହାଟ
ପ୍ରିୟ ଏ ପୃଥିବୀ ଏବେ ବି ଶିଖାଏ କେତେଭଳି ମତେ ପାଠ ।

॥ ୩୩ ॥

ତରୁ ନୁହେଁ କିନ୍ତୁ ଛାଇ ଅଛି ମୋର କ୍ଲାନ୍ତ ପଥିକ ଲାଗି
ନଦୀ ନୁହେଁ କିନ୍ତୁ ଆନ ପାଇଁ ଜାଗେ ପ୍ରୀତିଢେଉ ଅନୁରାଗୀ
ନଭ ନୁହେଁ କିନ୍ତୁ ସ୍ୱପ୍ନର ତାରା ମନାକାଶେ ଥାଏ ଶୋଇ
ଦୁଃଖ ଏତିକି ଶଠତା ଶିଖିକି ମଣିଷ ପାରିନି ହୋଇ ।

॥ ୩୪ ॥

ଧୂପ ଦେଲି, ଦେଲି ଘୋରା ଚନ୍ଦନ, ଦେଲି କର୍ପୂର ରେଣୁ
ଫୁଲହାର ଦେଇ ଭାବିଲି ଶୁଣିବି ତୁମରି ମୋହନ ବେଣୁ
ଆସିଲନି ତମେ, ଆତୁରେ ଯେବେ ମୁଁ କହିଲି 'ଦେଉଛି ମନ'
ଅଚାନକ ଦୂରୁ କାନରେ ବାଜିଲା ତୁମରି ବଇଁଶୀ ସ୍ୱନ ।

।। ୩୫ ।।

ପୁଅକୁ ସୁନ୍ଦର ପାଟ ପୀତାମ୍ବରୀ ଝିଅକୁ ସୁନ୍ଦର ନେତ
ନଈକୁ ସୁନ୍ଦର ନହୁଲୀ ନଉକା, ଗାଆଁକୁ ସୁନ୍ଦର କ୍ଷେତ
ଲତାକୁ ସୁନ୍ଦର କୁସୁମ ମେଖଳା, ବଣକୁ ସୁନ୍ଦର କିଆ
ସବୁଠୁ ସୁନ୍ଦର ଦିଶିଥାଏ ଯେବେ ପାଶେ ହୋଇଥାଅ ଠିଆ ।

।। ୩୬ ।।

ଦୀପକୁ କହିଲି ଜଳୁଛୁ କାହିଁକି ସହିକି ଦହନ ତାତି
ଉତ୍ତର ଶୁଣିଲି, 'ଏଇତ ଜୀବନ, ନହେଲେ ଟେଳେ ମୁଁ ମାଟି
ରୋଷଣୀରେ ତୋର ଝଲମଲ ଯଦି ନକରିଲୁ ଚାରିପାଶ
ମାଟିର ପିତୁଳା ତୁଛାରେ ପୃଥିବୀ ବୁକୁରେ କରିଲୁ ବାସ ।'

।। ୩୭ ।।

'ଆସେ କି କେବେ ମୁଁ ସପନରେ ତୁମ' ପଚାରିଲ ମତେ ଯେବେ
ପାଟଳ ଧରିଲା କପୋଳ, ସରମେ ମଉନ ରହିଲି ତେବେ
ତୁମକୁ ସୁମରି ରାତି ପରେ ରାତି ପତା ମୋ ହୁଏନି ବୁଜା
କେମିତି ଦେଖିବି ସପନ ତାହେଲେ ତୁମେଇ ଟିକିଏ ବୁଝା ।

॥ ୩୮ ॥

ଆଶ୍ରୟ ବିନା ରହି ନପାରନ୍ତି କବିତା, ବନିତା, ଲତା
ମହାକବି ତୁମେ କହିଗଲ ଯେଣୁ ଏଭଳି ଗୋଟିଏ କଥା
ନିଜ ପାଦେ ନିଜେ ଛିଡା ହେବା ପାଇଁ ପ୍ରୟାସ କରେ ମୁଁ ଯେବେ
'ବୃଥା ଏ ସାହସ' ଉପହାସ କରି ଜଗତ ହସଇ ତେବେ ।

॥ ୩୯ ॥

ହୀରା ଦେଲ ନାଇଁ, ନୀଳା ଦେଲ ନାଇଁ କିଛି ତ ଦେଲନି ପ୍ରଭୁ
ମୋତି ଦେଲ ନାଇଁ, ମଣି ଦେଲ ନାଇଁ, ଲୁଚାଇ ରଖିଲ ସବୁ
ଦେଲ ଖାଲି ଯାହା ପ୍ରୀତିରେ ବତୁରା ଦରଦୀ ହୃଦୟଟିଏ
ଭଲପାଏ ବୋଲି ଦୋଷ ତେବେ କିଆଁ ସାରା ଏ ବସୁଧା ଦିଏ ।

॥ ୪୦ ॥

କବିତା ଲେଖିଲି ଶୁଣିବାକୁ ଆଜି କାହାରି ହୁଏନି ମନ
ବିନା ଶରଧାରେ ମରି ମରି ଯାଏ କବିତାର ଉପବନ
ସରସ ମନର ମଣିଷ କାଇଁ ତ ଗୋଟିଏ ବି ନାହିଁ ଦେଖେ
ଶୁଣିବା ପାଇଁକି ଅରାଜି ଆଜି ମୁଁ ଯା ଲାଗି କବିତା ଲେଖେ ।

|| ୪୧ ||

ଯନ୍ତ୍ରଣା ଘନ ଜ୍ୱାଳାରେ ଉତୁରି ଛଟପଟ ହେଲି ଯେବେ
ନୟନାଭିରାମ କୃଷ୍ଣଚୂଡାତୁ ଆଖିରେ ପଡିଲୁ ତେବେ
ରୌଦ୍ରତାପରେ ଖୁସିମନେ ଯଦି ଖେଳି ତୁ ପାରୁଛୁ ହୋଲି
କାହିଁକି ଭାବିବି ନିଦାଘ ଆସିଲେ ଜୀବନ ସରିଲା ବୋଲି ।

|| ୪୨ ||

ଏପାରିରେ ଘନ ଅନ୍ଧାର ଆଉ ସେପାରି ଆଲୋକେ ଭରା
ସେପାରି ଜୀବନ ଅମୃତମୟ, ଏପାରେ ବିରାଜେ ଜରା
ସେ ପାରିରେ ଶୁଭେ ମୋହନ ମୁରଲୀ, ଏପାରିରେ କୋଳାହଳ
ତେବେ ବି ଏପାରି ଛାଡିବି ଭାବିଲେ ଆଖିରୁ ଉଛୁଳେ ଜଳ ।

|| ୪୩ ||

ଭାରି ମଉଜିଆ ମଉଷଧିଟିଏ କି ଗୁଣ ଗାଇବି ତାର
ଯିଏ ଦିଏ ଆଉ ଯିଏ ନିଏ କରେ ଦିହିଁଙ୍କର ଉପକାର
ଏଭଳି ଦରବ ପାଇବନି କାହିଁ ବୁଲିଆସ ସାରା ଗାଆଁ
ଗୁଣୀ ଜନେ ବହୁ ବିଚାର କରିକି ପ୍ରେମ ବୋଲି ଦେଲେ ନାଆଁ ।

|| ୪୪ ||

ସିଏ କି ଅଶିଣ ବିତରେ ନାହିଁ ଯେ ଗଙ୍ଗଶିଉଳି ବାସ
ସିଏ କି ଆଷାଢ଼ ଆଗମନେ ଯାର ମୟୂର ରଚେନି ରାସ
ସିଏ କି ଆକାଶ ଉକୁଟାଏ ନାହିଁ ରକ୍ତିମା ଯହିଁ ରବି
ସିଏ କି ସପନ ଯହିଁରେ ଆସେନି ତୁମରି ରୁଚିର ଛବି ।

|| ୪୫ ||

ବାଟ ଚାଲୁ ଚାଲୁ କେତେ ଯେ ପଥୁକୀ ଜୀବନେ ପାଇଛି ଦେଖା
ନିମିଷକ ଲାଗି କାହାରି ପାଇଁତ ହେଲାନି ସପନ ଲେଖା
ସବୁ ପତରର ରସେ କି ଉକୁଟେ ମଂଜୁଳ ଅନୁରାଗ
ମଞ୍ଜୁଆତି ତମେ ମନ ପାପୁଲିରେ ରଖିଦେଇଗଲ ଦାଗ ।

|| ୪୬ ||

ରେଣୁ ରେଣୁ ବାଲି ଝରି ଝରି ପଡେ ଯେତେ ବି ଜାବୁଡି ଧଇଲେ
ସମୟର ରଥ ଥମିଯାଏ ନାହିଁ ଯେବେ ବି ନେହୁରା ହୋଇଲେ
ଗୋଧୂଳି ନଇଁଲା, ବେଳ ଆସିଗଲା ଡେଇଁକି ଲକ୍ଷ୍ମଣଗାରକୁ
ଜୀବନ କାରାରୁ ମୁକୁଳି ଶେଷକୁ ଫେରିଯିବା ପାଇଁ ଘରକୁ ।

|| ୪୭ ||

ଭାଗ୍ୟର ରେଖା ଭାରି ଫିକା ଫିକା କହିଥିଲେ ଜ୍ୟୋତିଷ
ଭାଗ୍ୟହୀନା ମୁଁ ମନରେ ଭାବିଲି ଉପାୟ କରିବି କିସ
ହାତଟି ଧରିଲ, ହଠାତ୍ ଦେଖିଲି ପାପୁଲିକି ମୋର ଚାହିଁ
ଭାଗ୍ୟର ରେଖା ସ୍ପଷ୍ଟ ହୋଇଛି, ଫିକା ଫିକା ଆଉ ନାହିଁ ।

|| ୪୮ ||

ଜାଣିତ ନଥିଲି ଏତିକି ରଂଗ ଦେହେ ମୋ ରହିଛି ଭରା
ମୂଳରୁ ଥିଲି ମୁଁ ରଂଗବିହୀନ କେରିଏ ଆଷାଢୀ ଖରା
ବିନ୍ଦୁଏ ଜଳ ହେଇକି ଆସିଲ, ଶିହରାଇ ଗଲ ତନୁ
ତୁମରି ଭିତର ଦେଇକି ହେଲି ମୁଁ ରୂପସୀ ଇନ୍ଦ୍ରଧନୁ ।

|| ୪୯ ||

କାମନା କରିନି କେବେ ବି ପାଇବା ପାଇଁ କି ଅମୂଲମଣି
ବିନା ଅସରଫି ଭାବେ ମୁଁ ନିଜକୁ ବସୁଧା ଭିତରେ ଧନୀ
ମୁଠିଏ ହୃଦୟ ପ୍ରୀତି ଜରଜର ଯେହେତୁ ରଖିଛି ଧରି
ଜାଣିଛି ତୁମକୁ କିଣି ମୁଁ ପାରିବି ତାକୁ ହିଁ ବଦଳ କରି ।

।। ୫୦ ।।

ହାତେ ଦେଇଥିଲ ଶାମୁକା ସେଦିନ ସାଗର ବେଳାରୁ ସାଉଁଟି
ନୀରସ ଭେଟିରେ ମନ ମାନିଲାନି ଆସିଲି ରୋଷରେ ଲେଉଟି
ଏତେ ଦିନ ପରେ ଖୋଲି ଦେଖେ ଅଛି ମୁକୁତା ଶାମୁକା ଛାତିରେ
ଉଦାସୀ ଆଖି ମୋ ଖୋଜିବୁଲେ ସେଇ ହଜିଯାଇଥିବା ସାଥିରେ ।

।। ୫୧ ।।

ସାଗର ବେଳାରେ କଉଡିମାଳରେ ଶାମୁକା ଧୂସର ଦେହୀ
ପଡି ରହିଥିଲି ବରଷ ବରଷ ଛାତିରେ ମୁକୁତା ନେଇ
କେତେ ପଥଚାରୀ ବାଟ ଭାଙ୍ଗିଗଲେ ବୁଝିଲେନି କେହି ମୂଲ
ଆଦରିଲ ତମେ, ସେ ଲାଗି ପାଇଲ ପ୍ରୀତିର ମୁକୁତା ଫଳ ।

।। ୫୨ ।।

ଦିନର ଆଲୋକେ ଲୁଚି ରହିଯାଏ ଆକାଶ ଭରତି ତାରା
ନିଦାଘେ ଲୁଚଇ ଶ୍ୟାମଦୁବଘାସ ଖୋଲା ପ୍ରାନ୍ତର ସାରା
ପଥରଚଟାଣ ତଳେ ଲୁଚିଥାଏ ସ୍ନିଗ୍ଧ ଶୀତଳ ପାଣି
ରୋଷ ଆଢୁଆଳେ ପ୍ରୀତି ମୋ ରହିଛି ଏତିକି ପାରନି ଜାଣି ?

।। ୫୩ ।।

ଛାୟାପଥ ହେଉ, ହେଉ ବା ଉଲ୍‌କା, ବାଦଲ ହେଉ ବା ବୃଷ୍ଟି
ଅଂଶୁମାଳୀରୁ ଅମ୍ବର ଯାଏ ସବୁଚ ତୁମରି ସୃଷ୍ଟି
ଅବାକ୍ ଲାଗଇ ତେବେ ବି ରଖିଚ ଧୂଳି କଣାଟିରେ ସଉକ
ମାଟିଗନ୍ଧରେ ନିଶିଦିନ ପାଏ ତୁମ ସତ୍ତାର ମହକ ।

।। ୫୪ ।।

କହିତ ନଥିଲି ଚନ୍ଦ୍ର ତାରକା ଆକାଶୁ ତୋଳିକି ଆଣ
କହିତ ନଥିଲି ହୀରାନୀଳା ଦିଅ ରହିଲା ତୁମକୁ ରାଣ
ମାଗିବା ଭିତରେ କାଣିଚାଏ ଖାଲି ଭଲପାଇବାର ସ୍ୱାଦ
ଭାରି ପଡିଗଲା ସେତିକି ତୁମକୁ, ଏମିତି ସାଧିଲ ବାଦ ।

।। ୫୫ ।।

ଅନ୍ତୁଡିଶାଳରେ ନିଦ ଯାଇଥିଲି ହୋଇଥିଲୁ ଚାରୁ ଝୁଲଣା
ସବାରି ହେଲୁ ତୁ ବିଦାହେଲି ଯେବେ ସାରି ଶୈଶବ ବୋଲଣା
ପଲଙ୍କ ସାଜିଲୁ ମଧୁଯାମିନୀରେ ଅଙ୍କା ବଙ୍କା ଛଅ ଡାଳରେ
ଜାଣେ ମତେ ଶେଷ ବୋହି ନେଇଯିବୁ ମହାଯାତ୍ରାର କାଳରେ ।

|| ୫୬ ||

ଛଅଟି ଛବିଳ ଋତୁ ମିଶିଗଲେ ବରଷଟି ହୁଏ ତିଆର
ସାତଟି ରଂଗ ମିଶିଲେ ଫୁଟଇ ଇନ୍ଦ୍ରଧନୁର ଫୁଆର
ଟୋପି ଟୋପି ନୀର ମିଶିକି ସରଜେ ଅଥଳ ନୀଳିମ ଜଳଧି
ପ୍ରାର୍ଥନା ଆଉ ଭାଗ୍ୟ ମିଶିଲା ପାଇଲି ତୁମକୁ ଜଲ୍‌ଦି ।

|| ୫୭ ||

ନଗଣ୍ୟ ଏକ ତରୁଶାଖା ହୁଏ ଆହ୍ଲା
କିମ୍ବା ସରାଗ, ସୁରମୟ ଚାରୁ ବେହେଲା
ଦଳିଦେଲ ମତେ ଭାବିଲ ମିଶିଲି ମାଟିରେ
ମୀନାର୍ ହେଇକି ଠିଆହେବି ଦିନେ
ମନେ ରଖିଥାଅ
ଝଲସି ଜୀବନ ଭାଟିରେ ।

|| ୫୮ ||

ଖରାର ସାତଟି ରଂଗ ଦେଖିବାକୁ ଯବକାଚ ଥିବ ରଖି
ମୋ ମନ ନୀଳିମା ଦେଖିବା ପାଇଁକି ଲୋଡା ଯେ ଦରଦୀ ଆଖି
ଜଡାଜଡି ହେଲେ ଅମ୍ଳଜାନ ଓ ଉଦ୍‌ଜାନ ହୁଏ ପାଣି
ଦେହ ଆଉ ମନ ଉଭୟ ମିଶି ମୁଁ ଏତିକି ପାରନି ଜାଣି ?

॥ ୫୯ ॥

ଅଗ୍ନି ଜାଣେନି କିଏ ଅମୃତ କିଏ ଅବା ଗୁରୁ ଗରଳ
ପାଦପ ଜାଣେନି କିଏ ସେ ଶତ୍ରୁ, କିଏ ବା ମିତ୍ର ସରଳ
ବର୍ଷା ଜାଣେନି ଉଷର ଭୂଇଁକେ କିଏ ଅବା ଭରା ସାଗର
ମୃତ୍ୟୁଜାଣେନି ବାଳୁତ ବୃଦ୍ଧ ପଠାଇ ଦିଏ ତା ଡଗର ।

॥ ୬୦ ॥

କାଶୀ ଗଲା କିଏ କିଏ ବା ମଥୁରା କିଏ ଅବା ଶିରୀକ୍ଷେତ୍ର
ବୃନ୍ଦାବନର ଶୋଭା କେ ଦେଖିଲା ସାର୍ଥକ କରି ନେତ୍ର
ଗଙ୍ଗା ଦେଖିନି, ଗୟା ବି ଦେଖିନି, ସକଳ ତୀର୍ଥ ଏଇଠି
ତୁମରି ପାଖରେ ଜୀବନ ବିତିଲା, ସେ ଲାଗି ଶୋଚନା ନାହିଁଟି ।

॥ ୬୧ ॥

ରତ୍ନବେଦୀରେ ବସିଥିଲ ତମେ ଦେଉଳେ ଦେଖିଲି ଯାଇ
ରାଜବେଶ ତୁମ ଅଚିହ୍ନା ଲାଗିଲା ମନ ମୋ ମାନିଲା ନାହିଁ
ଫେରନ୍ତାବାଟରେ ରାଜପଥ ଧାରେ ଅୟୁତ ମଣିଷ ମେଳା
ଚିହ୍ନା ତୁମ ଚାରୁ ରୂପ ସବୁ ମୁହେଁ ଦେଖିଲି କରୁଛି ଖେଳା ।

॥ ୬୨ ॥

ପକ୍ଷୀଟିଏ କର, ଚକ୍ଷୁର କାଟିବି
ମନ୍ଦିର ଅବା ମସ୍‌ଜିଦ୍ ହେଉ
ହେଉ ସେ ଅଥବା ଗୀର୍ଜା
ବିନା ଭିସା ଆଉ ବିନା ଭାଷା ଯିବି
ସାରା ଏ ପୃଥିବୀ
ଦିଲ୍ଲୀ ହେଉସେ ହେଉସେ ଅଥବା ସାର୍‌ଜା ।

॥ ୬୩ ॥

ଝାଉଁ ଗଛ କହେ ଆକାଶ ଛୁଏଁ ମୁଁ ବାହୁରେ
ଦୂର୍ବା, ମୋ ସାଥେ ସମାନ ହେବୁ ତୁ କାହୁଁରେ
ବାତ୍ୟା ଆସିଲା, ଭଗ୍ନ ଝାଉଁର ବାହୁଟି
ଦୁବଘାସ ତାର ନରମ ବାହୁରେ
ଧରି ରଖିଥିଲା ସାଉଁଟି ।

॥ ୬୪ ॥

ନାଲି ଟୁକୁଟୁକୁ ଚୁଡିଗୋଛା ତକ ହୋଇଗଲା ହାତେ ଶିକୁଳି
ପାଦର ପାଉଁଜି ବେଡି ହୋଇଗଲା ହୁଏନି ତହିଁରୁ ମୁକୁଳି
ଚାପସରି ହେଲା ବେକ ଚାରିପାଖେ ଫାଶ ପଡିଥିବା ଦଉଡି
ଘର ହୋଇଗଲା କାରାଗାର ଖୋଲା ପବନ ଦିଏ ଯେ ଘଉଡି ।

।। ୬୫ ।।

ଚନ୍ଦନ ଡାଳ ଘୋରିହୁଏ ଯେବେ ଶିଳାରେ ଚହଟେ ଗନ୍ଧ
ବାସନା ବିତରେ ଧୂପ, ଜଳେ ଯେବେ ନିଆଁରେ ମନ୍ଦମନ୍ଦ
ପେଶି ହେଉଥିଲେ ଶ୍ରୀଫଳ, ନିଗିଡେ ତଇଳ ବିନ୍ଦୁ ବିନ୍ଦୁ
ନିପୀଡିତ ହେଲେ କବିତାର ସୁଧା ସରଜେ ହୃଦୟ ସିନ୍ଧୁ ।

।। ୬୬ ।।

ଏତେ ନିପୀଡନ ସୃଷ୍ଟିରେ ତୁମ ଦେଖୁନ କେମିତି କୁହ
ପୋଛିତ ପାରନ୍ତ ଆସିକି ଅନ୍ତତଃ ଜଣକ ଆଖିର ଲୁହ
କହିଲି ଯେମିତି ଶୁଣିଲି ସହସା ତୁମ ଅମୃତବାଣୀ
'ପଠାଇଛି ତତେ ସେଇଲାଗି ପରା ଏତିକି ପାରୁନୁ ଜାଣି ।'

।। ୬୭ ।।

ଡାକୁଥିଲ ମତେ ଜହ୍ନ ବୋଲିକି ଥିଲି କାଳେ ଭାରିସଫା
କହୁଥିଲ ଥିଲି ଶୁଭ୍ର ସତେଜ ସଜ ଫୁଟିଥିବା କପା
ବେଦାଗ ଦେହରେ କାଳିମା ବୋଳିଲ ରଖିଦେଇଗଲ ଦାଗ
ଜହ୍ନ ଡାକୁଥିଲ, କଳଙ୍କ ରେଖା ସେ ଲାଗି ଦେଲକି ଆଗ ?

|| ୬୮ ||

କୃଷ୍ଣ ପଥର କଟି କଟି ହୁଏ ତାରା ଝଲମଲ ହୀରା
ଧାନଫୁଲ ହସେ କିରିକିରି ଭୂଇଁ ଲୁହାରେ ହୋଇଲେ ଚିରା
ଇନ୍ଦ୍ରଧନୁର ଝୋଟି ଲେଖାହୁଏ ଘନ ଘୋର ଝଡ଼ ଶେଷେ
ବ୍ୟଥା ନପାଇଲେ ଜଗତେ ଜୀବନ ସାଜିବକି ନୂଆବେଶେ ?

|| ୬୯ ||

ସିଏ କି ସରସୀ ମୁହଁ ଦେଖେନାଇଁ ଯେଉଁଥିରେ କଇଁଫୁଲ
ସିଏ କି ନିଦାଘ ଝଲସେନି ଯହିଁ କୃଷ୍ଣଚୂଡ଼ାର ଝୁଲ
ସିଏ କି ଶ୍ରାବଣ ବରଷଣେ ଯାର ପାଗଳ ହୁଏନି ନଦୀ
ସିଏ ଅବା କେଉଁ ପାର୍ବଣେ ଲେଖା, ତୁମେ ପାଖେ ନାହଁ ଯଦି ।

|| ୭୦ ||

ଛାଡିଗଲି ମୋର ଘର ସାମ୍ନାରେ କିଛି ଘାସ, କିଛି ଲତା
କେତୋଟି କବିତା, କେତୋଟି ନିଛକ୍ ଭଲପାଇବାର କଥା
ଛାଡିଗଲି ଦୀନଜନେ ଦେଇଥିବା ଆଶ୍ୱାସନାର ଝୋଲି
କେମିତି କହୁଚ ସାର୍ଥକ ତେବେ ଜୀବନ ହେଲାନି ବୋଲି ।

|| ୭୧ ||

ହାର ଲୋଡା ନାହିଁ, ହସି ଦିଅ ତହୁଁ ଝରିବ ମୁକୁତା ମାଳ
ଘର ଲୋଡାନାହିଁ ବାହୁରେ ଆବୋର ଖୁସିରେ କଟିବ କାଳ
ମଣିମାଣିକର ମଞ୍ଜୁଷା ମୋର ହାତକୁ ଦିଅନା ଟେକି
ଅନୁରୋଧ, ଯଦି ପାରିବ ମୋ ଲାଗି ଗୀତଟିଏ ଯିବ ଲେଖି ।

|| ୭୨ ||

ଜୀବନ ସିଏ ଯେ ଗୋଟିଏ ସରଳରେଖା
ଦୁଇଟି ବିନ୍ଦୁ ଦୁଇପଟେ ଯାର ଲେଖା
ଏପଟେ ଜନ୍ମ, ସେପଟେ ମୃତ୍ୟୁସୂଚୀ
ସରଳ ଜ୍ୟାମିତି କେମିତି ପାରନି ବୁଝି ।

|| ୭୩ ||

ତୁମେ କହିଯାଅ ଅନ୍ୟର କଥା
କଟୁଆଳ ପୁଅ, ରାଜକନ୍ୟାର ପ୍ରୀତି
ଉର୍ଣ୍ଣନାଭ ମୁଁ ଆପଣା ସୂତାରେ
ଜାଲବୁଣି ଲେଖେ
ସାଧାରଣ ଏକ ଜୀବନର ମଧୁଗୀତି ।

|| ୭୪ ||

ଟେନାଟିଏ ଝକମକି ବାନ୍ଧିରଖେ ଅନଳର ଶିଖାକୁ
ସକାଳ ଶିଶିରଠୋପା ସାଜେ ପିନ୍ଧି ସବିତାର ଟୀକାକୁ
ମହୀରୁହ ବନ୍ଧାପଡେ ଅଣୁସମ କୁନିମଂଜି ପାଖରେ
ଅପହ୍ନୁଅ ହୁଅ ପଛେ, ଜାଣେ ଦିନେ ଆସିବ ମୋ ଡାକରେ ।

|| ୭୫ ||

କେବେ ତ ବସିନ ହାତେ ହାତ ଧରି କୁଲୁ କୁଲୁ ନଇ ତୁଠେ
କେବେ ତ ବୋଳିନ ଦୋଳରେ ଛପିକି ଗୋଲାପି ଅବିର ମୁଠେ
ଶଙ୍ଖ ମଲ୍ ମଲ ଉଆସ ତୁମର ଥାଉ ତୁମ ପାଖେ ଥାଉ
ଭଲ ପାଇବାର ସଂଜ୍ଞା ବୁଝିନ ମତେ ବା ବୁଝିବ କାହୁଁ ।

|| ୭୬ ||

ଯତନ ନକଲେ ଚିକଣ ଚଟାଣ ଶିଉଳିରେ ହୁଏ ସିଆଁ
ଯତନ ନ କଲେ  ଘାସ ଗାଲିଚାରେ ଛାଇଯାଏ ଗୁଗୁଚିଆ
ଯତନ ନକଲେ କାନ୍ଥ ଲୁଣିମାରେ, ଖସିପଡେ ପଲସ୍ତରା
ଯତନ କରିନ, ସେଇଲାଗି  ଆଜି ହୋଇଛି ସୁଷମା ହରା ।

।। ୭୭ ।।

ତାରାଟିଏ ଯଦି ମରିଯାଏ ଆଜି, ଫିକା ତା କିରଣରେଖା
ବରଷ ବରଷ ପରେ ଆସି ଦିଏ ଧରଣୀବୁକୁରେ ଦେଖା
ଯେଉଁ ନିପୀଡନ ଦେଇଥିଲ ମତେ ଦିନ ଦିନ ଧରି କେବେ
ବୁଝି କି ପାରୁନ ପ୍ରତିଦାନ ତାର ମୋ'ଠୁ ପାଉଛ ଏବେ ।

।। ୭୮ ।।

ମନ୍ଦିର ଆଉ ମସ୍‌ଜିଦ୍ ଦୁଇ ପୀଠରେ ରହିଛ ବୋଲି
ଏତେ ଦିନ ଧରି ଭାବି ଆସିଥିଲି, ଡାକୁଥିଲି ପାତି ଝୋଲି
ଏବେ ଲାଗେ ତୁମେ ଦୁଇଟି ଭିତରେ କେଉଁଠି ବି ନାହିଁ ରହି
ଯେହେତୁ ରୋକିନ ମୁଗୁର ପାହାର ଥରଟେ ବି ଉଭା ହୋଇ ।

।। ୭୯ ।।

ଜୀବନ ମରଣ ନିକିତିର ଦୁଇପଟ
ବଞ୍ଚିଲାବେଳେ ମର ନାଇଁ ମର ନାଇଁ
ମରିଲା ପରେ ବି ବଞ୍ଚିବା ପାଇଁ ଶିଖ
ଯେମିତିକି ଲୋକେ ବାହୁନି କହିବେ
ଗଲା କାହିଁ ? ଗଲା କାହିଁ ?

॥ ୮୦ ॥

ହିମବାହ ଚିରା ଚଗଲୀ ଝରଣା କୁଳୁକୁଳୁ ଗୀତ ଗାଇ
ବହି ଆସିଥିଲି କେବେଦିନେ ନୀଳ ସପନେ ମଗନ ହୋଇ
କେତିକି ବେଇଗି ବାଟ ସରିଗଲା, ରୂପ ହେଲା ମହାନଦୀ
ସାଗରେ ମିଶିବା ପାଇଁକି ଡାକରା ଶୁଣେ ଏବେ ନିରବଧି ।

॥ ୮୧ ॥

ଆଷାଢ଼ ଆସିଲା ଅଳକାପୁରୀରେ ମେଘଡମ୍ବରୁ ବାଜେ
ଆଷାଢ଼ ଆସିଲା, ମୁଦିର ପ୍ରେମରେ ଉତ୍ସୁକ ଧରା ସାଜେ
ଆଷାଢ଼ ଆସିଲା, ପହିଲି ତିଥିରେ ବରଷଣ ଝିରିଝିରି
ମେଘଦୂତ ବାଟ ଚାହିଁକି ବସିଛି, କେତେ ଦୂରେ ରାମଗିରି ?

॥ ୮୨ ॥

ନାରୀକେଳ ହାତେ ଭକତଙ୍କ ଭିଡ, ବେଢା ଥିଲା ଗହଗହ
ପଚାରିଲ ହସି 'ପୂଜାଲାଗି ମୋର କିସ ତୁ ଆଣିଚୁ କହ' ?
'ଜୀବନଯାକର ସୁଫଳ ଆଣିଛି, ଶ୍ରୀଫଳ ପାଇବି କାହୁଁ ?
ଦୀନଜନ ମୁଁ ଯେ' କଥାଶୁଣି ମୋର ମଥାରେ ରଖିଲ ବାହୁ ।

ପପ

## ଦ୍ୱିତୀୟ ସ୍ତବକ

# ନାରୀ

ଭାବିନେଇଥିଲ ହାତ ମୋର ଛଏ
        ବିଧାତା ଗଢ଼ିଛି ଖାଲି
ସଜ ମେହେନ୍ଦିର ଚାରୁ ନକ୍ସାରେ
        ଧରିବାକୁ ରଙ୍ଗ ନାଲି
ମଞ୍ଜୁଆତି ତେଜି ଲେଖନୀ ଧରିଲି
        ଉତୁରିଲା ତୁମ ରୋଷ
କରଚୁଲି ଛାଡ଼ି କଲମ ଧରିବା
        ଜାଣିଲି ସେ ମହା ଦୋଷ ।

ଭାବିନେଇଥିଲ ପାଦ ମୋର ଗଢ଼ା
        କେବଳ ପାଉଁଜି ପାଇଁ
ମନ ମୋହୁଥିବ ନିଶିଦିନ ତୁମ
        ରୁଣୁଝୁଣୁ ଗୀତ ଗାଇ
ପାଉଁଜି ଫିଟାଇ ପଦାକୁ ଆସିଲି
        କହିଲ ନିଠୁର ବାଣୀ
ଦେହଳୀ ଡେଇଁକି ଆକାଶ ଦେଖିବା
        ଅପରାଧ ଗଲି ଜାଣି ।

□□

# ସର୍ତ୍ତ

ତମର ଜାତି କଅଣ, ଗୋତ୍ର କଅଣ
କିଛି ଯାଏ ଆସେନି ମୋର ସେଥିରେ ।
ତୁମର ବର୍ଣ୍ଣ କଅଣ, ବୃତ୍ତି କଅଣ
କିଛି ଯାଏ ଆସେନି ମୋର ସେଥିରେ ।

ମୁଁ ଖାଲି ଜାଣିବାକୁ ଚାହେଁ
ତମେ ମତେ ବୋକାପରି ଭଲପାଇପାରୁଚ ନା ନାଇଁ
ଚଲାପଥରେ ଅଚାନକ୍ ଆସିଥିବା
କ୍ରୋଧଶୀଳ କଣ୍ଟାବଣ ତକ
ଅକ୍ଳେଶରେ ଡେଇଁ ଡେଇଁ
ପାର୍ ହୋଇ ପାରୁଚ ନା ନାଇଁ

ଝଡପରେ,
ଭୂଲୁଣ୍ଠିତା ତୁମ ଜୀବନର ଲତା
ପୁଣିଥରେ, ଅବିଳମ୍ବେ
ସାଦାସାଦା ମୃଦୁଗନ୍ଧୀ କଢରେ ଛାଇ ହୋଇ
ବାସ୍ନା ବିତରି ପାରୁଚି ନା ନାଇଁ ।

ମୁଁ ଖାଲି ଜାଣିବାକୁ ଚାହେଁ
ଯନ୍ତ୍ରଣାପିହିତ ରାତିଟିଏ
ବିତେଇ ସାରିଲା ପରେ
ତଟ୍‌କା ନୀଳପଦ୍ମ ପାଖୁଡ଼ା ପରି ଆଖିମେଲି
ତମେ କହିପାରୁଚ ନା ନାଇଁ
ଜୀବନ ଅମୃତମୟ ବୋଲି ।

ଯଦି ପାରୁଚ,
ହାତ ବଢ଼େଇ ଦେଇଛି
ଆସ ।



# ଟଲଷ୍ଟୟ

ଭୁଲ କହିଥିଲ ତମେ
ତମରି ସେଇ ପ୍ରଖ୍ୟାତ କ୍ଷୁଦ୍ରଗଳ୍ପଟିରେ ।
ଶେଷ ବେଳକୁ
ମଣିଷର କୁଆଡେ ଲୋଡା
ମାତ୍ର ଛଅ ଫୁଟ ଜମି ।
ଭୁଲ କହିଥିଲ ତମେ,
ଛଅ ଫୁଟ ଜମି ?
ଏତେ ଜାଗା ନେଇ ମୁଁ କରିବି କଅଣ ?
ମୋ'ର ତ ଦରକାର
କେବଳ ହାତମୁଠା ମାପର
ସ୍ନିଗ୍ଧ, ଶୋଭନ ହୃଦୟଟିଏ
ଯେଉଁଠିକି ଗାଦିମାଡି ବସିଥିବି
ଚିରଦିନ ଲାଗି
ମୃତ୍ୟୁପରେ ବି ।



# ଈଶ୍ୱରଙ୍କୁ

ଏଇ ଯେଉଁ ସାମାନ୍ୟ ବୁଦ୍ଧିବୃତ୍ତି
ସେତିକି ବି ଦେଲ କାହିଁକି ?
କାରଣ ମୁଁ ଜାଣେ,
ଶେଷ ବିଚାରର ଦିନ
ତମେ ମତେ ପଚାରିବନି
ମୁଁ କେତୋଟି କବିତା ଲେଖିଛି ବୋଲି ।
ଦେଖିବାକୁ ବି ଚାହିଁବନି
ମୁଁ ପଢିଥିବା ପୁସ୍ତକର ତାଲିକା ।
ବରଂ ମତେ ପଚାରିବ
ମୁଁ ଲୁହ ପୋଛି ପାରିଛି
ମୋ ଦରଦୀ ହାତରେ
କେତୋଟି ଅସହାୟ ଆଖିପତାରୁ ।

ଏଇ ଯେଉଁ ସାମାନ୍ୟ ବୁଦ୍ଧିବୃତ୍ତି
ସେତିକି ବି ଦେଲ କାହିଁକି ?
ବଦଳରେ ତ ଦେଇପାରିଥାଆନ୍ତ
ପୃଥିବୀକୁ ରସସିକ୍ତ କରିବା ପାଇଁ
ସମବ୍ୟଥୀ ଓ ସକରୁଣ
ହୃଦୟଟିଏ ।

□□

# ବନ୍ଦି

ମୁଁ ତ ତୁମକୁ
ବନ୍ଦି କରି ସାରିଛି ମୋ କବିତାରେ
ଅନେକ ଆଗରୁ ।

ମୋ କବିତାର ପ୍ରତିଟି ପଙ୍କ୍ତିରେ
ତୁମ ମଧୁ ଅନୁରାଗ,
ପ୍ରତିଟି ଛନ୍ଦ, ଲୟ, ତାଳରେ
ତୁମ ପ୍ରୀତିର ବେହାଗ ।
ମୋ କବିତାର ଶରତ ଋତୁରେ
ତୁମେ ଦେଇଥିବା ଗଙ୍ଗଶିଉଳିର ବାସ୍ନା
ଏବଂ ନିଦାଘରେ
ତୁମ ଟୋପି ଟୋପି ସ୍ୱେଦବିନ୍ଦୁର ନକ୍ସା ।

ମୁଁ ତ ତୁମକୁ
ବନ୍ଦି କରି ସାରିଛି ମୋ କବିତାରେ
ଅନେକ ଆଗରୁ ।
କିଏ କହେ
ତମେ ମୋ'ଠୁ ଦୂରେଇ ଯାଇଚ ବୋଲି ?

□□

# ଶିଶିର ବିନ୍ଦୁ

କାଲି ଦେଖିଲି
କେରି କେରି ସବୁଜଘାସ ଉପରେ
ଶିଶିର ବିନ୍ଦୁ,
ଆଉ ତା' ଭିତରେ ସୂର୍ଯ୍ୟ ।
ସେ ସୂର୍ଯ୍ୟର ଦହକ ନଥିଲା
ଜ୍ୱଳନ ନଥିଲା ।
ତାକୁ ଶୀତଳ କରିଦେଇଥିଲା
ଶିଶିର ବିନ୍ଦୁ ।

ଅବ୍‌ଶୋଷ
ତୁମର ପ୍ରଖରତାକୁ ହଟେଇ ଦେଇ
ତୁମକୁ ସ୍ନିଗ୍ଧ, ଶୀତଳ କଲା ଭଳିଆ
ଶିଶିର ବିନ୍ଦୁଟିଏ ମୁଁ ହୋଇ ପାରିଲିନି ।



# ଘର

ଦୁଃଖ ତୁମର
ମତେ ଆଜିଯାଏ
ଘରଟିଏ ଦେଇ ପାରିନ ବୋଲି ।
ଆଉଜେଇ ନେଇଚ ଛାତିକି
ଆଶ୍ରା ଦେଇଚ ହୃଦୟରେ,
ଆଉ ଆବାସ କରିଛି ଛବି ମୋର
ନିରନ୍ତର
ତୁମ ନୀଳପଦ୍ମ ନୟନ ମଣିରେ ।

କଅଣ ହବ ମୋର ଆଉ ଘର ?

ଠଠ

# ତୁମପାଇଁ

ହୋଇ ପାରନ୍ତିକି
ତୁମ ରୋଗଶଯ୍ୟା ପାଖରେ ରଖା
ପେନ୍ଥାଟିଏ ଦ୍ରାକ୍ଷାଫଳ,
ଗୋଟିଏ ମୌସମ୍ଭୀ
ଅଥବା କେତୋଟି କୋଲା
ରସଭର୍ତ୍ତି କମଳା ଲେମ୍ବୁର ।

ତମ ଛାତି ଭିତରେ ଗୁମୁରୁଥିବା
ଗ୍ଲାନିର ସେ ଗାରତକ ପୋଛି ଦେବା ପାଇଁ
ହୋଇ ପାରନ୍ତିକି
ପିଲାଦିନେ ଗଣିତଖାତାରୁ
ଭୁଲ୍ ମିଶାଣ ଲିଭାଉଥିବା
ସେଇ ଚାରିକୋଣିଆ ରବରଟୁକ୍‌ଡାଟି ।

# ଜୀବନର ମର୍ମ

ପାହାଡକୁ ପଚାରିଲି
ତମର ସୃଷ୍ଟି କେମିତି ?
ଉତ୍ତର ମିଳିଲା
'ରେଣୁ ରେଣୁ ଧୂଳିକଣାରେ' ।

ସାଗରକୁ ପଚାରିଲି
'ଆଉ ତମର ସର୍ଜନା ?'
ସାଗର କହିଲା
'ଟୋପି ଟୋପି ଜଳବିନ୍ଦୁରେ' ।

ତେବେ ଯାଇ ବୁଝିଲି
ଜୀବନର ମର୍ମ ।

ଜୀବନ ଅଧିକା କିଛି ନୁହେଁ
ନିରର୍ଥକ ଓ ନଗଣ୍ୟ ମନେହେଉଥିବା
ନିହାତି ସାନ ସାନ କେତୋଟି ମୁହୂର୍ତ୍ତ
ଓ ଘଟଣାର ସମଷ୍ଟି ମାତ୍ର ।



# କେତେବେଳେ ବଞ୍ଚେ ମଣିଷ

ମଣିଷ କେତେବେଳେ ବଞ୍ଚେ ?
କେତେବେଳେ ବଞ୍ଚେ ମଣିଷ ?
ବଞ୍ଚିବାମାନେ କଅଣ
ଖାଲି ଇଷତ୍ ଉଷୁମ ପ୍ରଶ୍ୱାସର
ଏକ ନିରବଚ୍ଛିନ୍ନ, ନିୟମବଦ୍ଧ ଶୃଙ୍ଖଳା ?
ଫୁସ୍‌ଫୁସ୍‌ର ଗଳିକନ୍ଦିରେ
ଅମ୍ଳଜାନ ତକ ଛାଣିନେଇ
ଅଙ୍ଗାରକାମ୍ଳତକ ଫେରାଇ ଦେବା ?
ବଞ୍ଚିବା ମାନେ କଅଣ
କେବଳ ସମୟକୁ ଧର୍ଷଣ କରି
ଘଡିର କଣ୍ଟାପରି ଆଗେଇ ଯିବାର
ଏକ ପୌନଃପୁନିକ, କ୍ଷୟିଷ୍ଣୁ ଜୀବନଚର୍ଯ୍ୟା ?

ଠାକୁରଘର, ଖେଳ ପଡିଆ
ଅଫିସ୍ ଟେବୁଲ୍, ଝିଅବାହାଘର
ଟୁକୁଡା, ଟୁକୁଡା ଅନୁଭୂତିର .
ବୁଟିଦାର୍ ଶାଢିରେ ଲେପ୍‌ଟି ହୋଇ
ସଠିକ୍ କେତେବେଳେ ବଞ୍ଚେ ମଣିଷ ?
ମୁଁ ଜାଣେ,

ମୁଁ କିନ୍ତୁ ଅନୁକ୍ଷଣ ବଞ୍ଚୁନି ।
ନିଶି ଅନ୍ଧାରରେ
ଖଦ୍ୟୋତ ଝଲସିଉଠିଲା ପରି
ଜୀବନର ବିଷନ୍ନ ତମସା ଭିତରେ
ଦପ୍‌ଦପ୍ ହୋଇ
ମୁଁ ବଞ୍ଚୁଛି
ମାତ୍ର କେତୋଟି ମୁହୂର୍ତ୍ତ ।

ମାତ୍ର କେତୋଟି ମୁହୂର୍ତ୍ତ
ଯେତେବେଳେ କି
ମୁଁ ମୁମୂର୍ଷୁକୁ ଦେଇଛି ଶୁଶ୍ରୂଷା
ତୃଷାର୍ତ୍ତକୁ ଦେଇଛି ନୀର
ଏବଂ ବିପନ୍ନକୁ ଦେଇଛି ଆଶ୍ରୟ ।
ମୁଁ ବଞ୍ଚୁଛି କେବଳ ସେତିକି ବେଳେ
ଯେତେବେଳେ କି
ମୁଁ ଭଲ ପାଇଛି ତୁମକୁ
ବେପରୱା ହେଇ
ତୀବ୍ର ଭାବରେ ।

୦୦

# ଯଷ୍ଟି

ତୁମ ଆଗରୁ
ମୁଁ ଚାଲିଗଲେ
ମନେରଖ
ମୋ ଅସ୍ଥିତକ
ସାଉଁଟି ନବ ମୋ ଚିତାଗ୍ନିରୁ
ଉଷ୍ମ ପାଉଁଶ ଖେଳାଇ ଖେଳାଇ,
ତୁମ ଜୀବନର ସାୟାହ୍ନରେ
ତୁମ ଅବନତ ଶରୀରର ଭାର ବହନ କରିବା ଲାଗି
ଯୋଖିଯାଖି ଯଷ୍ଟିଟିଏ ତିଆରି କରିବ ବୋଲି ।

ଦଦ

# ଧୈର୍ଯ୍ୟ

ଏକ୍‌ଦମ୍ ପିତାଗଛଟିଏ
ନିମ ପରି ।
ଭାରି ଶାନ୍ତ, ଭାରି ସୁକୁମାର
ବଞ୍ଚେଇ ରଖିବା କାଠିକର ପାଠ ।
ନିତିଦିନ ପାଣି ପିଇ
ଚାରାଟି କଳିପତ୍ର ଖୋଲିବା ପରେ ବି
କେବେ ଦିନେ
ମରି ଯାଇପାରେ ଅକସ୍ମାତ୍

ଗଛଟିରେ
ଫୁଲଫୁଟେ ଡେରିରେ
କିନ୍ତୁ ସମୟ ଆସିଲେ
ଗଛଟି ମୃଦୁହସି ଉପହାର ଦିଏ
ଭାରି ସ୍ୱାଦିଷ୍ଟ
ଭାରି ସୁମିଷ୍ଟ ଫଳଟିଏ ।



# ପ୍ରୀତିକଥା

ଭୟରେ, କାହା ଆଗରେ
ଦିନେ ତୋଳା ଉଠାଇ ଚାହିଁନି ତମକୁ
କାଳେ କିଏ ପଢ଼ିଦେବ ବୋଲି
ତୁମ ପାଇଁ
ମୋ ସଲାଜ ଆଖିର ପ୍ରୀତିକଥା ।

ଭୟରେ, କାହା ଆଗରେ
ଦିନେ କଥା ପଦେ ବି କହିନି ତୁମକୁ
କାଳେ କିଏ ବୁଝିଯିବ ବୋଲି
ମୋ ଗହନମନର ଗଭୀରତା ।

ତେବେ ବି
କେମିତି ଯେ ଜାଣିଗଲେ ଲୋକମାନେ !

◻◻

# ଜୀବନ ଯାତ୍ରା

ଏତେ ଜିନିଷ ଦିଅନା
ଯାତ୍ରା ପାଇଁ
ଯିବିତ ଏଇଠୁ ଏଇଠିକି ।

କିଛି ଶସ୍ୟ, କିଛି ଫଳ
ମୃଦୁଗନ୍ଧୀ ପାଣି କିଛି
କଳସୀର,
କିଛି ଫୁଲ, କିଛି ବହି
ଏବଂ କିଛି ସବୁଜାଭ ସ୍ୱପ୍ନ ।

ଏତିକି ଯଥେଷ୍ଟ
ଏଇ ଯାତ୍ରା ପାଇଁ
ଏତେ ଜିନିଷ ଦିଅନା
ଯିବିତ ଏଇଠୁ ଏଇଠିକି
ମାତ୍ର ଜନ୍ମରୁ ମୃତ୍ୟୁଯାଏ ।

□□

# କବିତା

ଅଳ୍ପ ଶବ୍ଦରେ
ଯିଏ ବେଶୀକଥା କହେ
ସିଏ ଇ କବିତା
ରକ୍ତ ଟଳମଳ ହୃଦୟର
ଧୁକ୍‌ଧୁକ୍ ଆୱାଜକୁ
ଯିଏ ଅକପଟ ମୂର୍ତ୍ତି କରିଯାଏ
ଶବ୍ଦର ମାୟାଜାଲରେ
ଆଉ ଯିଏ
ତା'ର ସ୍ୱଚ୍ଛ ପରୀମାଫିକ୍ ଡେଣାରେ ବସାଇ
ଉଡେଇ ନେଇଯାଏ ମତେ
ମେଘର ଝାଲର ସେପଟେ ଥିବା
ଏକ ନୀଳାଭ ଦ୍ୟୁତିମୟ ଇଲାକାକୁ
ସିଏ ଇ କବିତା ।

ଯେଉଁ କଥା
ତୁମକୁ ମୁହାଁମୁହିଁ କରିପାରେନି
ଲାଜ ଲାଗେ ବୋଲି
ଆଉ ଝିମ୍ ଧରା ଅଧରାତିରେ
କଲମମୁନରେ ଉଗାଳିଦିଏ
ବେସରମ୍ ହୋଇ
ଏକ ଅଭୂତପୂର୍ବ
ଯନ୍ତ୍ରଣାମୟ ଆବେଗରେ
ସିଏ ଇ କବିତା ।

# ପୁଅ ପାଇଁ ଦୁଇଟି କବିତା

( ୧ )

ରାସ୍ତା କଡର
ଅନାଥ, ଉଲଗ୍ନ
ଓ ଅପରିଚ୍ଛନ୍ନ ଶିଶୁଟିକୁ
ଅଫୁରନ୍ତ ମମତାରେ ଆଉଁଷିଦିଏ
ତୋ' କଥା ମନେପଡେ ବୋଲି ।
ତୁ ଆସିବା ପରେ
ମୁଁ ଯେମିତି ନରମେଇ ଯାଇଛି
ଅଚାନକ୍
ଅହେତୁକ ଭାବରେ ।

( ୨ )

ନରମ ତୁଲ୍‌ତୁଲ୍
ତୃପ୍ତିକର ତୁଳା କଣ୍ଢେଇଟିକୁ
ପରମ ଆବେଗରେ
ଛାତିକୁ ଆଉଜେଇ ନେଲାବେଳେ
କେବେ କଅଣ ଭାବିପାରିଥିଲି
ଯେ ଦିନେ ସିଏ ହୋଇଯିବ
ମୁଁ ଥକ୍‌କା ହେଇ ଆଉଜି ପଡିଲା ଭଳିଆ
ସିମେଣ୍ଟ ଓ କଂକ୍ରିଟ୍‌ର
ଜବରଦସ୍ତ ଖମ୍ବଟିଏ ।

# ହୀରାଫୁଲ

ମୋ ବେଣୀରେ
ମଲ୍ଲିକଢଟିଏ ଖୋଷି ଦେଉ ଦେଉ
କାଲି କହିଲ
ଆହା !
ବୈଦୁର୍ଯ୍ୟର ବଣିକ ହେଲିନି କାହିଁକି ?
ତାହେଲେ ଖଞ୍ଜି ଦେଇଥାଆନ୍ତି
ଝିକିମିକି ରତ୍ନଖଚିତ ହୀରାଫୁଲ
ତୋ ଭ୍ରମରକୃଷ୍ଣ ଗଭାରେ
ତୁଚ୍ଛ ଏଇ ମଲ୍ଲି ବଦଳରେ ।

ଜାଣ !
କାଲି ଅଧରାତିରେ
ନିଦଭାଙ୍ଗି ଦେଖେ
ଘର ମୋର ହାଲୋକ ହେଇଯାଇଛି
ଅକଳଙ୍କ ହୀରକ ଆଭାରେ ।
ତମଦିଆ ମଲ୍ଲିକଢଟି
ହଠାତ୍
ହୀରା ପାଲଟି ଯାଇଛି ମୋ ବେଣୀରେ ।

ଭଲ ପାଇଲେ
ହୀରାଫୁଲ ଓ ମଲ୍ଲିଫୁଲରେ
କିଛି ଫରକ୍ ରହେନି ବୋଧେ ।
ଭଲ ପାଇଲେ
ସାଧାରଣ ଉପହାରଟିଏ ବି
ବୋଧହୁଏ ହେଇଯାଏ ଏମିତି ଅସାଧାରଣ ।

□□

# ବାପା ବୋଉଙ୍କୁ

(୧)
ବୋଉ,
କାର୍ତ୍ତିକ ଚଉରାମୂଳେ ଜଳୁଥିବା
ଟିମ୍ ଟିମ୍ ଦୀପଶିଖାଟିଏ ।
ଆପ୍ରାଣ ଚେଷ୍ଟା
ଦୂରେଇଦବ ଅନ୍ଧକାର
ଘରର କୋଣ, ଅନୁକୋଣର ।

ବାପା,
ଘୁଣଧରା ପିଆଶାଳର ଖୁଣ୍ଟିଟିଏ
ଆପ୍ରାଣ ଚେଷ୍ଟା
ଧରିରଖିବେ, ଚେମେଣିଲଗା
ପତନୋନ୍ମୁଖ ଛାତକୁ ।

ତେବେ ବି ଦୂରହୁଏନି ଅନ୍ଧକାର,
ତେବେ ବି ଭୁଷୁଡ଼ି ପଡେ
ଅଳନ୍ଧୁ ମିଶା ଛାତରୁ ଚେନାଏ ।

( ୨ )

ବାପା,

ଝଙ୍କାଳିଆ ନିମଗଛଟିଏ ।

ସବୁ ଦେହ ଦୁଃଖ

ଆପଦ ବିପଦ ପାଇଁ

ମହୌଷଧି ।

କେତେ ଯେ ଝଡ଼ପବନ

ବର୍ଷା ବିଜୁଳି

ପାର୍ ହୋଇ ଆସିଲୁ

ସେ ଗଛ ତଳେ ଠିଆ ହୋଇ ।

ବୋଉ,

ମହମହ ବାସ୍ନାର

ଅଭଡ଼ା କୁତୁଆଟିଏ ।

ଅନ୍ନ ଦିଏ ପେଟ ପୂରେଇ,

ଭଣ୍ଡାର ସରିଗଲେ

ଦେହରେ ତା'ର ଲଗାହୁଏ

ତୁଳସୀ ଗଛଟିଏ ।

ଫିଙ୍ଗିଦେବା ଚିଜ ନୁହେଁ ।

କେଉଁଠି ବା କେଉଁଠି

କାମରେ ଲାଗିଯାଏ ସିଏ ।

□□

# ଉତ୍କଳମଣି

( ୧ )
ବିଗତବର୍ଷ
'ସମାଜ'ରେ ତୁମପାଇଁ କବିତାଟିଏ ଲେଖି
କି ଯେ ବିଡମ୍ବିତ ହୋଇଚି ମୁଁ ।

କେଉଁ ଦୂର ଅପନ୍ତରା ଗାଁ'ରୁ
ଚିଠି ଲେଖିଥିଲା ଲୋକଟି
ମୋ କବିତାଟି ପଢି ।
ଧରି ନେଇଥିଲା
ଏଭଳି ଦରଦୀ କବିତାଟିଏ
ଯିଏ ଲେଖି ପାରୁଛି
ସିଏ ହୁଏତ ହେଇଥିବ
ସତରେ ଭାରି ଭଲ ମଣିଷଟିଏ ।
ପୂରାପୂରି ନହେଲେ ବି
ଅନ୍ତତଃ କିଛି ଅଂଶରେ ତୁମପରି ।

ସାହାଯ୍ୟ ଲୋଡିଥିଲା ଲୋକଟି
ରୁଗ୍‌ଣ, ପଙ୍ଗୁ ପତ୍ନୀର ଉପଚାର ପାଇଁ ।
ଆଶା କରିଥିଲା
ହୁଏତ ମୁଁ ପଠେଇ ଦେବି
ଆଖି ଦୁରୁଶିଆ ଅର୍ଥ କିଛି,

ହୁଏତ ମୁଁ କହିବି
ନେଇ ଆସ ପତ୍ନୀଙ୍କୁ ଭୁବନେଶ୍ୱର
ଚିକିତ୍ସାର ଦାୟିତ୍ୱ ମୋ'ର ।

ଲୋକଟି କେଡେ ବୋକା ଥିଲା ସତରେ !
ଭାବିନେଲା
ଗୋପବନ୍ଧୁଙ୍କୁ ନେଇ କବିତାଟିଏ ଲେଖିଲେ
ଜଣେ ଗୋପବନ୍ଧୁ ହୋଇଯାଏ ଅବା !

ଲୋକଟି କେଡେ ବୋକା ଥିଲା ସତରେ !
ବୁଝିପାରିଲାନି
ଯେ ମୋହମାୟାର ଆବିଳ ଆବର୍ତ୍ତରେ
ଆକଣ୍ଠ ବୁଡି ଆକୁପାକୁ ହେଉଥିବା
ମୁଁ ନିହାତି ସାଧାରଣ
ନିହାତି ନିକୁଛିଆ ମଣିଷଟିଏ ।
ଯିଏ କି ତୁମକୁ ନେଇ
କେବଳ କବିତାଟିଏ ଇ ଲେଖିପାରେ ।
କଳ୍ପନା କରିପାରେନି
ଜନ୍ମ ଜନ୍ମାନ୍ତରର ସାଧନା ପରେ ବି
ସରି ହେବାପାଇଁ
ତୁମ ପଦରଜ ସହିତ ।

(୨)
ଆଜିକାଲି
ମୁଁ ବେଶ୍ ଚାଲାଖ ହେଇଯାଇଛି ।
ବର୍ଷକୁ ଥରଟେ
'ସମାଜ'ରେ ତୁମ ନାଁରେ ବେକାର କବିତାଟିଏ ଲେଖି
ସାମିଲ୍ କରି ନେଇଛି ନିଜକୁ
ପ୍ରତିଷ୍ଠିତ କବି ଗୋଷ୍ଠୀରେ ।

ଆଜିକାଲି
ଆମ୍ଭେମାନେ ବେଶ୍ ଚାଲାଖ ହୋଇ ଯାଇଛୁ
ବର୍ଷକୁ ଥରଟେ
ତୁମ ଶ୍ରାଦ୍ଧସଭାର ଆୟୋଜନ କରି
ଜାହିର୍ କରିଦେଉଛୁ ନିଜକୁ
ପୁଣ୍ୟାତ୍ମା ଓ ଧର୍ମାତ୍ମା ବୋଲି ।

ତୁମକୁ ଆଢୁଆଳ କରି
ନାଁ' କମେଇବାରେ
ବେଶ୍ ପାରଙ୍ଗମ ହୋଇ ଉଠିଲୁଣି
ଆଜିକାଲି
ମୁଁ ଓ ଆମ୍ଭେମାନେ ।

କିନ୍ତୁ ତେବେ ବି ବିଶ୍ୱାସ କର,
ବର୍ଷକୁ ଥରଟେ
ଯେଉଁ ପାଞ୍ଚମିନିଟ୍
ତୁମ ପାଇଁ କବିତାଟିଏ ଲେଖେ
ମନେହୁଏ
ସତେ ଅବା ଧୋଇଗଲା
ଜୀବନଯାକର ପାପ, ତାପ ଓ କଳୁଷ
ମନେହୁଏ
ସତେ ଅବା ଅମୃତ ସ୍ନାନ କରି ଉଠିଲି
ଏବେ ଏବେ ।



# ଶେଷବାକ୍ୟ

ପ୍ରତ୍ୟେକ ମଣିଷକୁ
ଯଦି ସମୟ ଦିଆହୁଏ
ମୁହୂର୍ତ୍ତଟିଏ
ତା'ର ଶେଷ ନିଃଶ୍ୱାସ ଯିବା ପୂର୍ବରୁ,
ଆଉ ତାକୁ କହି ଦିଆଯାଏ
ଏଇ ହେବ ତା'ର ଶେଷବାକ୍ୟ
ପ୍ରିୟ ପରିଜନଙ୍କ ପାଇଁ
ସିଏ ନିଶ୍ଚିତ ଭାବରେ
ଗୋଟିଏ କଥା ଇ କହିବ
'ମୁଁ ତୁମକୁ ଭଲ ପାଏ'

ପ୍ରତ୍ୟେକ ମଣିଷ
ସେଇ କଥାଟି
ଆଜି କହୁନି କାହିଁକି ?
ଏବେ କହୁନି କାହିଁକି ?



# ନଈ

ନଈଟି
ବନପଥେ ବହିଗଲା ବେଳେ
ଭେଟପାଏ, ବାଟେ ତା'ର
ବାରମ୍ବାର
ନିଷ୍କରୁଣ ଶିଳାଭୂଇଁ
ସ୍ପର୍ଦ୍ଧାଶୀଳ ପଥର ପାହାଚ ।

ନଈଟି କେବେ କଅଣ ବୁଝିପାରେ
ଯେ ତା'ର ବାଟ ରୋକୁଥିବା
ବାଲି ଗରଡାମାନେ ଇ ତାକୁ ଦିଅନ୍ତି
କୁଳୁକୁଳୁ ଗୀତର ଆଳାପ ?

□□

# ଭର୍ତ୍ତା

ଏଠି କିନ୍ତୁ କଥା ଓଲଟା
ମୂଳଛିନ୍ନ ଲତାଟିକୁ
ଆଶ୍ରୟ ଦେବା ବାହାନାରେ
ଗଛଟି ଲତାରୁ ରସ ଟାଣୁଥାଏ
ଟାଣୁଥାଏ....
ଲତାଟିର ସବୁକିଛି ଶ୍ୟାମଶ୍ରୀ ଓ ସରସତା
ନିଶ୍ଚିହ୍ନ ହେବା ପର୍ଯ୍ୟନ୍ତ ।

ଲତାଟି
ଗଛ ଭିତରେ
ସମୟାନୁକ୍ରମେ
ଏଭଳି ଛନ୍ଦି ହୋଇଯାଏ ଯେ
ଅଜସ୍ର ଝଡବର୍ଷା ସତ୍ତ୍ୱେ ବି
ଲାଖି ରହିଥାଏ ତା' ଦେହରେ
ସମର୍ପଣର ଏକ ବିନମ୍ର ଓ ଅନୁଦ୍ଧତ ଭଙ୍ଗୀରେ

□□

# ମନକୁ ମନ

ଜୀବନର
ସବୁକିଛି ବିଶୃଙ୍ଖଳା ସତ୍ତ୍ୱେ
ଅନେକ ସୁନ୍ଦର ଘଟଣା ଘଟେ
ନିୟମିତ
ମନକୁ ମନ ।

ଦିନ ସରେ ଗୋଧୂଳିରେ,
ଆକାଶର ଅଗଣାରେ
ମହମ୍‌ବତୀ ଜଳେ ତାରାର ।
ବର୍ଷା ଆସେ
ଦସ୍ତଖତ୍ କରିବା ପାଇଁ
ଧୂଳିଭରା କାଚର ଝର୍କାରେ ।

ଝିଙ୍କାରୀ ଗୀତ ଗାଏ
ହ୍ରାସପାଏ ଚନ୍ଦ୍ରକଳା ।
ଟକ୍‌ଟକ୍ ନାଲିଫୁଲ ଫୁଟେ
ବସୁମତୀର ସିନ୍ଥିକୁ ଝଲ୍‌ମଲ୍ କରି ।

ମଣିଷ ହସେ, ନିଦ ଯାଏ
ସ୍ୱପ୍ନ ଦେଖେ, ଭଲ ବି ପାଏ ।
ନିମନ୍ତ୍ରଣ କରେ ଶିଶୁଟିଏ
ଯିଏ କି ପ୍ରଶ୍ୱାସ ନିଏ
ଫୁସ୍‌ଫୁସ୍ ଭର୍ତ୍ତି
ମାଙ୍ଗଳିକ ଶଙ୍ଖଧ୍ୱନି ସାଥିରେ ।

ଜୀବନର
ସବୁ କିଛି ଅନିଶ୍ଚିତତା ସତ୍ତ୍ୱେ
ଅନେକ ଆଶ୍ଚର୍ଯ୍ୟ ଘଟଣାଘଟେ
ନିୟମିତ
ମନକୁ ମନ ।



# ପରାଜୟ

ଯେହେତୁ ତମେ ଦେଖିଲ
ମୋ ବିଜୟରେ
ତୁମ ପରାଜୟର ସଂକେତ
ଜାଣିଶୁଣି
ମୁଁ ବରଣ କରିନେଲି ଅସଫଳତା ।

ଯେହେତୁ ତମେ ପାଇଲ
ମୋ' ଐଶ୍ୱର୍ଯ୍ୟରେ
ତୁମ ନିଃସ୍ୱତାର ଇଙ୍ଗିତ
ଜାଣିଶୁଣି
ମୁଁ ରହିଗଲି କାଙ୍ଗାଳିନୀ ହେଇ ।

□□

# ସାରାଂଶ

ପୃଥିବୀର
ସବୁ ମଣିଷଙ୍କ ଜୀବନ କାହାଣୀ
ପ୍ରାୟ ଏକା ପରି ।
ଏସିଆରୁ ଆଫ୍ରିକାଯାଏ
ଦ୍ୱାପରଠାରୁ କଳିଯୁଗଯାଏ
ପ୍ରତ୍ୟେକ ଦେଶରେ
ପ୍ରତ୍ୟେକ ସମୟରେ
ଯେଉଁ ଭାଷାରେ ଲେଖ
ଯେଉଁ ଶୈଳୀରେ ଲେଖ
ଆଙ୍ଗିକ ଯାହା ହେଉ ନା କାହିଁକି
କାହାଣୀ ସଂକ୍ଷେପରେ ସେଇ ଗୋଟିଏ ।

କିଛି ଫରକ୍ ପଡେନି
ନାୟକ ଶ୍ୱେତ ହେଉ ବା ଶ୍ୟାମ
କାନ୍ତିବାନ୍ ହେଉ ବା କୁତ୍ସିତ
ବାଦ୍‌ଶାହ ହେଉ ବା ଗୋଲାମ ।
କିଛି ଫରକ୍ ପଡେନି ।

ଯବନିକା ପଡିଯିବା ପରେ
ସବୁତକ ଆଭରଣ ଓ ଅଙ୍ଗରାଗ ଉତାରି ଦେଇ
ମୁହଁରେ ବୋଳା ହେଇଥିବା
ବର୍ଣ୍ଣତକ ପୋଛିପାଛି
ଯେତେବେଳେ ଚରିତ୍ରଟି ବିଦାୟ ନିଏ
ଏବଂ ତା' କାହାଣୀ ଲିପିବଦ୍ଧ ହୁଏ
ଆନୁସଙ୍ଗିକ ବର୍ଣ୍ଣନା ସବୁ ବାଦ ଦେଲେ
ମୁଖ୍ୟତଃ ରହିଯାଏ ଗୋଟିଏ କଥା
ସାରାଂଶ
ମଣିଷଟି ଭଲ ଥିଲା ନା ଖରାପ ।



# ଚକାଡୋଳା

ଆଜିକାଲି
ତୁମକୁ ଦେଖିଲେ ମତେ ଭୟଲାଗେ ।
ଭୟ ଲାଗେ
ଯେ ଏଯାଏ ପଢିଥିବା
ବିଜ୍ଞାନର ତତ୍ତ୍ୱକଥା
ଓ ବିବର୍ତ୍ତନବାଦର କାହାଣୀ
ହୁଏତ ବିଶ୍ୱାସ କରିବିନି ଆଉ ।
ସେ ଚକାଡୋଳାର କୁହୁକରେ
ହୁଏତ ବିଶ୍ୱାସ କରି ବସିବି
ଯେ ତୁମେଇ ଅସଲ ସୃଷ୍ଟିକର୍ତ୍ତା
ଏ ବ୍ରହ୍ମାଣ୍ଡର
ଏ ବିଶ୍ୱର ।



# ଦୁଃଖ

ଅନେକ ଅନେକ ଦିନଆଗେ ମାଗିଥିଲି
ପିଲାଳିଆ ଆବେଗରେ,
ଆକାଶର ଚନ୍ଦ୍ର, ତାରା,
ଗଭା ସଜେଇବା ପାଇଁ ।
ଚନ୍ଦ୍ର, ତାରାତ ଦୂରର କଥା
ଏଇ ପୃଥିବୀର
ସାନ ସାନ ଖୁସିର ମୁହୂର୍ତ୍ତ କେତୋଟି ବି
ଭାରି ପଡିଲା ତୁମକୁ ଦେବାପାଇଁ,
ଢାଳିଦେଲ ଅଞ୍ଜିରେ ମୋର
ରେଣୁ ରେଣୁ ଦୁଃଖର କଣିକା ।

ଅନେକ ଅନେକ ବର୍ଷପରେ
ଆଜି ହଠାତ୍
ପଣତର ଗଣ୍ଠି ଖୋଲିଦେଖେ
ସେଇ ସବୁ ଦୁଃଖପୁଞ୍ଜ
ପାଲଟି ଯାଇଛନ୍ତି
ଝଲମଲ୍ ମଣିମୁକ୍ତାରେ
ଚିକ୍‌ମିକ୍ ଚନ୍ଦ୍ରତାରାରେ ।

ଭଲ ପାଇଲେ ବୋଧହୁଏ
ଦୁଃଖ ବି ସହି ହେଇଯାଏ ଏମିତି ।
ଭଲପାଇଲେ ବୋଧହୁଏ
ମଣିଷ ହେଇଯାଏ
ଅହେତୁକ ଭାବରେ କ୍ଷମାଶୀଳ ।

□□

# ଆଖି

ମୁଁ କଅଣ ଜାଣିଥିଲି
ଆଖି କଥା କହେ ବୋଲି ?
ନହେଲେ ମୁଁ ତୁମକୁ
ଚାହିଁଥାଆନ୍ତି ବା କାହିଁକି ?
କାହିଁକି ବା ସୁଯୋଗ ଦେଇ ଥାଆନ୍ତି ତୁମକୁ
ପଢିନବା ପାଇଁ
ମୋ' ମନର ଗୋପନ ଆଖ୍ୟାନ ?
ଆଉ କାହିଁକି ବା ତମେ
ସଭିଙ୍କ ସାମ୍ନାରେ
ମତେ ସରମରେ ଜୁଡୁବୁଡୁ କରି
ଲେଖିଥାଆନ୍ତ ଏଭଳି କବିତାଟିଏ ?

ମୁଁ କଅଣ ଜାଣିଥିଲି
ଆଖି କଥା କହେ ବୋଲି ?



# ଚକ

ଗାଡିଟି ଠିକ୍ ଚାଲେ
ସମତଳ ଭାବରେ
ଦୁଇଟିଯାକ ଚକ ସମାନ ଥିଲେ ।

ମୋ'ର ପରିଧି ଓ ବ୍ୟାସାର୍ଦ୍ଧକୁ
କାଟିକୁଟି
ତମେ ସାନ କରିଦେଲ
ଗତି ତେଣୁ ତୁମର ଏବେ ଶ୍ଳଥ ।

ମତେ ସମାନ କରିଦିଅ ତମ ସହିତ
ଦେଖିବ,
ଜୀବନଯାତ୍ରା ତମର ହୋଇଉଠିବ
ସ୍ୱଚ୍ଛନ୍ଦ ଓ ସାବଲୀଳ ।

□□

# ଡାଳ

ଡାଳ କାଟିଲେ
ଗଛଟି ହୋଇଉଠେ ଝଙ୍କାଳିଆ ।
ଡାଳ କାଟିଲେ
ଗଛଟି ଭର୍ତ୍ତି ହୋଇଯାଏ
ବେସୁମାରି ନରମ୍ କେନାରେ ।

ମୋ'ର ସ୍ୱପ୍ନ ଓ ସ୍ୱାତନ୍ତ୍ର୍ୟର ଶାଖାତକ
ନିଷ୍ଠୁର ଭାବରେ କାଟିଦେଲ ତମେ,
ଭାବିଲ
ନିଶ୍ଚିହ୍ନ କରିଦେବ ମୋତେ ।
କିନ୍ତୁ ମୋ'ର ଗୋଟିଏ ସ୍ୱପ୍ନର ବଦଳରେ
ମୁଁ ଯେ ଅଜସ୍ର ସ୍ୱପ୍ନରେ ଛାଇ ହୋଇଯିବି
ସେ ଖିଆଲ ରହିଲାନି ତମର ।

ଡାଳ କାଟି ସାରିଲା ପରେ ପରେ
ମୋ'ର ବ୍ୟାପ୍ତିକୁ ରୋକିବାରେ
ତମେ ଏବେ ଅସମର୍ଥ ।

□□

# ଧୀରପାଣି

ଶୁଣେ,
ଅନ୍ୟବାଟ ଖୋଲାଥିଲାବେଳେ
କାହିଁକି ମୁଁ ବହିଚାଲେ ଏଇବାଟେ ?
କାହିଁକି ମୁଁ ବହିଚାଲେ
ଅହରହ ଘଷିହୋଇ
ନିଦାରୁଣ, ନିଃସ୍ପନ୍ଦ ଏ ପଥର ଛାତିରେ ?

ଶୁଣେ,
କିନ୍ତୁ ମୁଁ ଧୈର୍ଯ୍ୟ ହରାଏନି ।
କାରଣ ମୁଁ ଜାଣେ
ଦିନେ ନା ଦିନେ ମୁଁ ସମର୍ଥ ହେବି ନିଶ୍ଚୟ
ଦାଗ ଟିକେ କାଟିବାକୁ
ଅବିନମ୍ର, ସ୍ଥିର ତୁମ
ପାଷାଣ ବୁକୁରେ ।
ଧୀର ପାଣି ଯେ ପଥର କାଟେ ।

□□

# ମଣିଷ

ମୁଁ ତ ଚାହିଁଥିଲି ରକ୍ତମାଂସର ମଣିଷଟିଏ ।
ତମେମାନେ
ମତେ ପଥରର ମୂର୍ତ୍ତିଟିଏ ଧରେଇଦେଲ କାହିଁକି ?
ଚୈତ୍ରର ସୁଗନ୍ଧୀ ରାତ୍ରିରେ
ମୁଁ ତ ଅପେକ୍ଷା କରି ବସି ରହିଥିଲି
ଦୂରାଗତ ବାୟୁବାହୀ
ଗୋଟିଏ ମଣିଷର ପଦଧ୍ୱନିକୁ ।
ଚାହିଁଥିଲି
ଶୋଷାଡି ନେବାପାଇଁ ଜୀବନର ନିରୁତା ମାଧୁରୀ
ଜୀବନ୍ତ ଗୋଟିଏ ମଣିଷର ହାତ ଧରି ।

ମୁକ୍ତିର ଦ୍ୱାହି ଦେଇ
ତମେମାନେ ତା' ବଦଳରେ
ପଥରର ବିଗ୍ରହଟିଏ ମତେ ଧରେଇଦେଲ କାହିଁକି ?

କାହିଁକି ବୁଝିପାରିଲନି
ମଣିଷ ହିଁ ଈଶ୍ୱର ।



# ଭୂମିସୁତା

କାଣିଚାଏ କୁଙ୍କୁମ
ଓ କେଇପଟ ଚୁଡି ପାଇଁ
ନିଲାମ କରିଦେଲି ଆତ୍ମା,
ନିଲାମ କରିଦେଲି ଜୀବନ ।
ନିଲାମ କରିଦେଲି
ଅଫୁରନ୍ତ ମଧୁମାସ
ଅଜସ୍ର ଶ୍ୟାମଘନ ଶ୍ରାବଣ ।

ବିନା ସର୍ତ୍ତରେ
ଛାମୁରେ ଦଣ୍ଡବତ ହେଲି
ନିଉଛାଳି, ନେହୁରାଳି ବି ।

ବେଳେ ବେଳେ ଭାବେ
ଇଏ ତ କିଛି ନୁହେଁ ।
କେବେ ଦିନେ
ସୁକୁମାରୀ ଭୂମିସୁତାଙ୍କୁ ମଧ ଜଳିବାକୁ ପଡିଥିଲା
ହୁତ୍ ହୁତ୍ ହୁତାଶନରେ
ପୁରୁଷୋତ୍ତମଙ୍କ ମନଜଗି ।

ଇଏତ କିଛି ନୁହେଁ,
ପିଠିରେ ଦାଗ କାଟିଯାଇ ଥିବା
ପାଞ୍ଚୋଟି ପାଞ୍ଚଣ ପ୍ରହାର ମାତ୍ର ।

□□

# ପୌତ୍ରପାଇଁ କବିତାଟିଏ

ମୁଖାଗ୍ନି ଦେବାପୂର୍ବରୁ
ଏଇତ ପଢାଯାଏ ମନ୍ତ୍ର !
ଶ୍ୱାସ ଯାଉ ବାୟୁକୁ
ଆଖି ଯାଉ ସୂର୍ଯ୍ୟକୁ
ମନ ଯାଉ ଚନ୍ଦ୍ରକୁ
କାନ ଯାଉ ଆକାଶର ଶୂନ୍ୟତାକୁ
ଶରୀର ହେଉ ପୃଥ୍ୱୀ
କେଶ ହେଉ ବୃକ୍ଷ
ଓ ରକ୍ତ ହେଉ ଜଳ ।

ମୋର ତେଣୁ ଅନ୍ତନାହିଁ
ତୋ ପାଇଁ ମୁଁ ଅଛି ଓ ଥିବି
ନିରବଧି ।
ସନ୍‌ସନ୍ ପବନର ଆୱାଜରେ
ମିଶିଥିବ ମୋର ପ୍ରଶ୍ୱାସ
ଯାହାକୁ ଶୋଷିନେବୁ ତୁ ଫୁସ୍‌ଫୁସ୍ ଭର୍ତ୍ତି ।
ସବିତାର କିରଣରେ ମିଶି
କୋମଳ ଚାହାଣୀ ମୋର

ଆଉଁଷି ଦବ ତୋ ଗାଲ, ଚିବୁକ, ଅଧର ।
ଚନ୍ଦ୍ରର ଲାବଣ୍ୟରେ
ଗୋଳି ହେଇ ଯାଇଥିବ
ମୋ ସ୍ନେହାର୍ଦ୍ର ମନର ଶୀତଳତା

ଆକାଶର ଇଥର୍ ପାର୍ କରି
ତୋ କାନରେ ପଡିବ
ମୋର ଗୁଣୁଗୁଣୁ ନାନାବାୟା ଗୀତ ।
ତୁ ପାଦଥାପି ଚାଲୁଥିବା
ଚୂନାଚୂନା ମୁଲାୟମ୍ ଘାସ
ମୋ ଦେହର ପୁଷ୍ଟି ନେଇ
ହୋଇଥିବ କମନୀୟ ଶ୍ୟାମ ।

ବେଣୀ ମୋର ରୂପନବ
ବରଗଛର ଓହଳରେ
ତୁ ଝୁଲି ଝୁଲି ଦୋଳି ଖେଳିବୁ ବୋଲି ।
ରୁଧିର ମୋର ମିଶିଯାଇଥିବ
ଝରଣାରେ, ନଦୀରେ, ହ୍ରଦରେ
ପୁଣି ଥରେ ତୋ ଦେହକୁ ଯାଇ
ଦ୍ରୁତ ଦୌଡିବା ଲାଗି ତୋ ଶିରା ପ୍ରଶିରାରେ ।
ମୁଁ ବଞ୍ଚି ରହିବି ପୁଣି ଥରେ
ତୋ’ ଭିତରେ
ତୋହରି ପାଇଁ ।



# ହେମନ୍ତ

ଦୁଆରବନ୍ଧରେ ଚାଉଳବଟାର ନକ୍ସା
କୁଳବଧୂ ଆଙ୍କେ ନାନା କୋଟିକମ ସାଥିରେ
ଫିକା କୁହୁଡ଼ିରେ ବିଲବାଟ ଦିଶେ ଝାପ୍‌ସା
ଆଗାମୀ ଗୀତର ଆଳାପ ଶୁଭଇ ରାତିରେ ।

ଧାନୀପାଟ ପିନ୍ଧା ଗଛ ନଇଁଯାଏ ଗହୀରେ
ଖଳାବାଡ଼ି ହସେ କୋଳରେ ଶୁଆଇ କଳେଇ
ବଡ଼ବଡ଼ିଆଙ୍କୁ ଆଲୋକ ଦେଖାଏ ମହୀରେ
ସନ୍ତାନ କେବା କାଉଁରିଆକାଠି ଜଳେଇ ।

ଲକ୍ଷ୍ମୀ ଆସିବେ, ଚଉଦିଗେ ପଡ଼େ ଡାକରା
ମାଣ ସାଜିଉଠେ ହରଗଉରା ଓ ଜବାରେ
ସୁକେଶିନୀ କିଏ ଭୋଗବାଢ଼େ ପୂର କାକରା
ପ୍ରଜାପତି ନାଚେ ମକଦଲ ଫୁଲ ସଭାରେ ।

ହେମନ୍ତ ଆସେ ସାଥିରେ ତାହାର ନେଇକି
ହେମଶସ୍ୟର ବେଭାର ବସୁଧା ପାଇଁକି ।

ଠଠ

# ଶରତ

ଏବେ ବି
କେଉଁ ମନ୍ତ୍ର ବଳରେ ଜାଣେନି
କଇଁଫୁଲ ଗୁଗୁପାଞ୍ଚ ଖେଳେ
ନୀଳସର ଚଗଲା ଢେଉରେ
ଏକ ନିର୍ଦ୍ଦିଷ୍ଟ ଋତୁରେ
ରାଣ ଦେଲା ପରି ।

ଆକାଶର ଖୋଲା ଚଟାଣରେ
ଐଶୀ କିଏ ତୁଳାଭିଣା
ଆସନ୍ତା ହେମନ୍ତ ଲାଗି ରେଜାଇ ବନାଏ ।
ଭାସିଯାଏ ଶୁଭ୍ରତମ କପାପୁଞ୍ଜ
ଭ୍ରମ ଦେଇ ଶାରଦୀୟ ମେଘ ସଂଭାରର ।

ଏବେ ବି
ଠିକ୍ ଏକ ନିର୍ଦ୍ଦିଷ୍ଟ ବେଳାରେ
ଶିଉଳିର ବୃନ୍ତ ବୁଡେ ନାରଙ୍ଗୀର ରସେ
ନିଛାଟିଆ ନଈପଠା ରଂଗମଞ୍ଚ ପରେ
କୃଶତନୁ କାଶ ରଚେ ମରୁତ ସାଥିରେ
ରାତି ଦିନ ମତୁଆଲା ନାଚ ।

ଏବେ ବି
କେଉଁ ମନ୍ତ୍ର ବଳରେ ଜାଣେନି
ନିୟମିତ ଶରତ୍ ଆସେ
ବସୁଧାକୁ କଥା ଦେଲା ପରି
ଅଲିଖିତ ଅଙ୍ଗୀକାର ସାଥେ
ଟୋପା ଟୋପା ଜହ୍ନିଫୁଲ ମାର୍କାମରା
ପାଟଶାଢ଼ି ଭେଟି ଧରି ହାତେ ।

□□

# ସଂସାର

ପାଞ୍ଚବର୍ଷ ତଳେ
ହାତରେ ଚାଉଳ ଆଞ୍ଜୁଳି ଧରି ବିଦାହେଲାବେଳେ
ମା' ଛେଉଣ୍ଡ ଗେହ୍ଲା ଝିଅଟି
ବାପାଙ୍କ ଛାତିକୁ ଆଉଜି କାନ୍ଦିଥିଲା ।
କହିଥିଲା,
'ମୁଁ କେମିତି ତମକୁ ଏକ୍‌ଲା ଛାଡିକି ଯିବି ବାପା ?
କିଏ ବା ଏଠି ଅଛି ବୁଝିବାକୁ ତମ କଥା ?'

ପାଞ୍ଚବର୍ଷ ପରେ
ବାପାଙ୍କଠାରୁ ପାଇଥିବା ବିଷନ୍ନ ଚିଠିଟି ପଢି
ମା' ଛେଉଣ୍ଡ ଗେହ୍ଲାଝିଅଟି
କାନ୍ଦିଥିଲା,
ଆଜି ବି ।
ଲେଖିଥିଲା,
'ମନ ଛଟ୍‌ପଟ୍ ତମକୁ ଯାଇ ଦେଖି ଆସିବାକୁ
ହେଲେ
ମୁଁ କେମିତି ତୁମ ଜ୍ୱାଇଁଙ୍କୁ ଏକ୍‌ଲା ଛାଡି ଯିବି ବାପା ?
କିଏ ବା ଏଠି ଅଛି ବୁଝିବାକୁ ତାଙ୍କ କଥା ?'

# ମୋ' କବିତା

ମୋ' କବିତା ହେଉ
ଝଡ ରାତିରେ ନୀଡ଼ରୁ ଖସି ପଡିଥିବା
ପକ୍ଷୀଶାବକଟିର ହୃଦୟ ପରି ।
ତା' ହୃଦୟର ଧିକି ଧିକି ସ୍ପନ୍ଦନ ପରି ।

ମୋ' କବିତା
ନ ହେଉ ଓଜନଦାର ଶବ୍ଦର ଆଡମ୍ବରରେ
ନ ହେଉ ଚମକ୍‌ଦାର୍
ଉପମା ବା ଅଳଂକାରରେ
ନଥାଉ ସେଥିରେ ଯମକ ବା ଅନୁପ୍ରାସ
ଲକ୍ଷଣା ବା ବ୍ୟଞ୍ଜନା ।
ସେଥିରେ ଥାଉ କେବଳ
ଧିକି ଧିକି ଏକ ନିଟୋଳ ହୃଦୟର ସ୍ପନ୍ଦନ
ତେବେ ଇ ଜାଣିବି
ମୋ' କବିତା ଜୀବନ୍ତ ।



# ପ୍ରୀତି

ଚଂପାଫୁଲର ବାସ୍ନା ପାଇଲେ
ମୁଁ ବୁଝିପାରେ
ତମ ବଗିଚାରେ ଫୁଲ ଫୁଟିଛି ।
ବାଁ ଆଖି ତେଇଁଲେ ଜାଣେ
ତମେ ଖୁସି ଅଛ ବୋଲି
ଆଉ ଛିଙ୍କିପଡିଲେ ଲାଗେ
ତମେ ମତେ ମନେ କରୁଛ ଅବା ।

କାଲି ବାଟ ଚାଲୁଚାଲୁ
କଣ୍ଟାଫୁଟିଲା ମୋ ପାଦରେ
ତମେ କଅଣ ସ୍ୱତଃସ୍ଫୁର୍ତ୍ତଭାବରେ
କହି ଉଠିଥିଲ
ଓଃ ।

ロロ

# ନାଗଫେଣୀ

ମୌସୁମୀ ମେଘ ବଦଳରେ ଦେଲ
ଡହ ଡହ ମରୁବାଲି
ପତ୍ର ତକ ମୋର କଣ୍ଟା ପାଲଟିଗଲା ।
ମୁଁ ଯଦି ଆଜି ନାଗଫେଣୀ
ସେଥିପାଇଁ ମୁଁ ଦାୟୀ ନୁହେଁ
ଦାୟୀ
ତୁମେ ମୋ' ପାଇଁ
ସୃଷ୍ଟି କରିଥିବା ପରିବେଶ ।

ଆଶ୍ଚର୍ଯ୍ୟ କଥା
ତମର ଏଭଳି ନିଷ୍ଠୁରତା ସତ୍ତ୍ୱେ
ମୁଁ ଆଜିବି ଫୁଲ ଫୁଟାଇଯାଏ ତୁମ ପାଇଁ
ହଳଦୀ ଗୁରୁଗୁରୁ ଦେହ ନେଇ ଅପେକ୍ଷା କରେ,
ବାଟ ଚାଲୁ ଚାଲୁ
କେଜାଣି ଅବା କେବେ ଅଟକିଯିବ ପାଖରେ ।



# ମୁକ୍ତା

ବେଳା ଭୂଇଁରେ
ଅଜସ୍ର ଲୁଣି ଢେଉର ଧକ୍କା ଖାଇ
ବିଧ୍ୱସ୍ତ ହେଲାପରେ ଦେଖିଲି
ଢେଉ ସବୁ ଛାଡି ଯାଇଛନ୍ତି ମୋ ପାଖରେ
ବେସୁମାର୍ ବିଚିତ୍ରବର୍ଣ୍ଣା ଶାମୁକା ।

ଜୀବନର ବେଳାଭୂଇଁରେ
ସନ୍ତାପର ଲହଡିରେ ଭାସୁ ଭାସୁ
କେବେ କେମିତି ମିଳିଯାଏ
ମୁକ୍ତାଗର୍ଭିତ ଶାମୁକାଟିଏ ।

ଏ ଜୀବନ ଯନ୍ତ୍ରଣା ଦିଏ
ସାଥିରେ ମୁକ୍ତା ବି ।

□□

# ଅଂଶୁମାନ୍

ଜହ୍ନର
ନରମ୍ ରେଶ୍‌ମୀ ଜୋଛନାର
ମାୟାବୀ ମୋହରେ ଟାଣି ହେଇ
ଚାଲିଗଲି ତା' ପାଖକୁ ।

ଯାଇ ଦେଖେ
ତା'ର ଆଲୋକ ଇ ନାହିଁ
ଝଲ୍‌ମଲ୍ କରୁଛି ସିଏ
ତୁମରି କିରଣରୁ କିଛି ଉଧାର ନେଇ ।

ଅଂଶୁମାନ୍
ମୁଁ ଫେରି ଆସିଛି ତୁମ ପାଖକୁ
ମତେ କ୍ଷମା କର ।



# ଅଭିଳାଷ

ହେଇପାରନ୍ତିକି
ମୁଲାୟମ୍ ଶ୍ୟାମ ଘାସର ଗାଲିଚାଟିଏ
କରିବା ପାଇଁ ଅପନୋଦନ
ଯାତ୍ରାଜନିତ ଶ୍ରାନ୍ତି
ତୁମ ସ୍ନିଗ୍ଧ, ସଫେଦ୍ ପାଦ ଦୁଇଟିର ।

ହେଇପାରନ୍ତିକି
ଜୈବସାର ଯୁକ୍ତ ମୃତ୍ତିକା କେଇମୁଠି
ଯୋଗାଇ ଦେବା ପାଇଁ ପୁଷ୍ଟି
ତୁମ ଜାମାର ବୋତାମ ଘରେ ଶୋଭା ପାଉଥିବା
ସାଦା ଗୋଲାପଟିକୁ ।



# ଗୋଟିଏ ମଣିଷ

ସାରା ପୃଥିବୀ
ଆଦ୍ୟ ଆଷାଢର ବର୍ଷାରେ
ବିଭୋର ଥିଲାବେଳେ
ମଣିଷଟିଏ କିଏ ସ୍ୱପ୍ନ ଦେଖେ
ପଠାଇବା ପାଇଁ ସନ୍ଦେଶ
ରାମଗିରିରୁ ଅଳକାପୁରୀ ।

ସାରା ପୃଥିବୀ
ଫୁଲଫୁଟା ଉତ୍ସବରେ ଉନ୍ମନ ଥିଲାବେଳେ
ମଣିଷଟିଏ କିଏ ନିରେଖୁଥାଏ
ଉପବନର ବୃନ୍ତଚ୍ୟୁତ
ରସଘନ ଫଳ ସଂଭାରକୁ ।

ଜନ୍ମନିଏ ମେଘଦୂତ,
ଜନ୍ମ ନିଏ ମାଧ୍ୟାକର୍ଷଣ ।
କେବଳ ଗୋଟିଏ ମଣିଷ ଯୋଗୁ ।

ଗୋଟିଏ ମଣିଷ
କିଛି କମ୍ ନୁହେଁ ଏ ପୃଥିବୀରେ ।

□□

# ମୁଁ

ମୁଁ ପାପୀ ନା ପୁଣ୍ୟବାନ୍
କୃତବିଦ୍ ନା ବେକାର
ଦାମ୍ଭିକ ନା ବିନମ୍ର
ନିର୍ଭର କରେନି ମୋ ଉପରେ ।
ନିର୍ଭର କରେ
ଅନ୍ୟମାନେ ମୋ ସଂପର୍କରେ
କଅଣ କହୁଛନ୍ତି
ତା' ଉପରେ ।

କି ବିଚିତ୍ର ଏ ଜୀବନ !
ଯେଉଁଠି କି ମୁଁ ରହିଗଲି
କେବଳ ଅନ୍ୟଲୋକର
କଳ୍ପନାର ମଣିଷ ହୋଇ
ରହିଗଲି ସେଇଆ
ଯାହା ଅନ୍ୟମାନେ ଭାବନ୍ତି
ଯଦିଓ ମୁଁ ନିଜେ ଠିକ୍ ସେଇଆ ନୁହେଁ ।



# ଜୀବନ

ଜଣେ କହିଲା
ପେଣ୍ଡୁ ପରି
ମନଇଚ୍ଛା କୁଦା ମାରି ଖେଳିଲାଭଳିଆ
ମତେ ଦିଅ ଜୀବନଟିଏ ।

ଆର ଜଣକ କହିଲା
ଭାବିଚିନ୍ତି, ହିସାବ କରି
ବିନା ଭୁଲ୍‌ରେ ବଞ୍ଚି ପାରିଲା ଭଳିଆ
ମତେ ଦିଅ ଜୀବନଟିଏ ।

ଶେଷ ବେଳକୁ
ଉଭୟ କହିଲେ
'ବାଛିବାରେ ଭୁଲ୍ ହୋଇଗଲା ।'

□□

# ଫୁଲ, ଜ୍ୟୋସ୍ନା, ଜୀବନ

ଚଂପାଫୁଲର କଢଟିଏ
ମନ୍ଦିରର ପୂଜାବେଦୀରେ
ଧୂଳିମଗ୍ନ ରାସ୍ତାସନ୍ଧିରେ
ସମଭାବରେ ଶ୍ରୀମୟ ।

ଶାରଦୀୟ ସାଦାଜ୍ୟୋସ୍ନା
ମଣିପ୍ରଭ ଉଆସରେ
ପର୍ଣ୍ଣ କୁଟୀର ପାହାଚରେ
ସମଭାବରେ ନିର୍ମଳ ।

ମାନବର ଜୀବନ
ପବିତ୍ର ଦେଉଳ ବେଢାରେ
ପାପର ଦେହଳୀ ଦୁଆରେ
ସମଭାବରେ ମୂଲ୍ୟବାନ୍ ।

ଭଲ ପାଅ
ଫୁଲକୁ,
ଜହ୍ନକୁ
ଏବଂ ମଣିଷକୁ ମଧ୍ୟ ।



# ସୁଭଦ୍ରା

ପିଲାଦିନୁ ଶୁଣି ଆସିଥିଲି
ହାତଯୋଡିକ କୁଆଡେ ଭାରି ସୁନ୍ଦର ।
ମସୃଣ, ଉଜ୍ଜ୍ୱଳ ତ୍ୱକ୍
ଚଂପାକଳି ପରି ଆଙ୍ଗୁଳି
ନଖରେ ଗୋଲାପି ମୁକ୍ତାଫଳର ପାଲିସ୍
ଟଟ୍‌କା କିଶୋରୀ ଗଛର
ନମନୀୟ, ନଧର ପ୍ରଶାଖାପରି
ଭାରି ଶ୍ରୀମୟ
ଭାରି କମନୀୟ ହାତଯୋଡିକ ।

ଆଜି କିନ୍ତୁ
ଏତେ ବର୍ଷ ପରେ ବୁଝୁଛି
ଯେ ମୋ'ର ହାତ ନାହିଁ ।
କାରଣ ପ୍ରୟୋଜନ ବେଳେ
ଏ ହାତ ଉପରକୁ ଉଠି
ଦିନେ ପ୍ରତିବାଦ କରିବାକୁ ଶିଖିପାରିଲାନି
ଅନ୍ୟାୟର, ଅତ୍ୟାଚାରର ।

ଆଜି ଯେତେବେଳେ
ଦର୍ପଣ ସାମ୍ନାରେ ଠିଆହୁଏ
ଓ ସାରା ଦେହରେ ଦେଖିବାକୁ ପାଏ
ଅଜସ୍ର ପ୍ରହାରର ଦାଗ
ମୁଁ ବୁଝିପାରେ
ସେ ଦାଗକୁ ରୋକିବାରେ
ଅସମର୍ଥ ହୋଇଛି ମୋ ହାତ ।
ମୁଁ ଏବେ ଠିକ୍ ବୁଝିଛି
ଯେ ମୋର ହାତ ନାହିଁ
ମୁଁ ସୁଭଦ୍ରା ପାଲଟି ଯାଇଛି ।

□□

# ମୁଁ ଚାହିଁଥିଲି

କାନ୍ଥରେ
ମରାଳଡେଣାର ଶୁଭ୍ରତା ।
ଝାଲିରେ ଲତେଇଥିବା
ଅଝଟିଆ ଅପରାଜିତାର ଦୋଳନରେ
ଓଡ଼ିଶୀର ମଙ୍ଗଳାଚରଣ ।
ପଶ୍ଚିମପଟ କାଚ ଖିଡ୍‌କୀ ଦେଇ
ଫଗୁ ଢାଳେ ବର୍ଣ୍ଣାଢ୍ୟ ଗୋଧୂଳି ।
ସାମ୍ନାରେ ସାରିବନ୍ଧ ଦେବଦାରୁ,
ଗାମ୍‌ଲାରେ କଳାଗୋଲାପ ଓ କ୍ୟାକ୍‌ଟସ୍ ।

ମୁଁ ତ ଏମିତିଆ
ଦୁର୍ମୂଲ୍ୟ କୋଠାଘରଟିଏ ଚାହିଁ ନଥିଲି ।
ଚାହିଁଥିଲି
ମିଠାଳିଆ ସ୍ୱାଦର
ଘରଟିଏ ମାତ୍ର ।

କାଇଁ ସେ ଘର ?



# ଗଛ

କାଠୁରିଆ ଡାଳ କାଟୁଥିଲା
ତେରଛା ହେଇ ବଢିଥିବା
ଆଲୋକାଭିଳାଷୀ ଡାଳଟି
ଠିକ୍ ପସନ୍ଦ ହେଇନଥିଲା ତା'ର ।

ଡାଳ କାଟି ସାରି
ଟୁକ୍‌ଟାକ୍ ସିନ୍ଦୂରୀ ଫଳ ତକ ତୋଳି
ଭରି ନେଇଥିଲା ଅଣ୍ଟିରେ ।

ଦେଖୁ ଦେଖୁ ମନେ ହେଲା,
ସତେ ଯେମିତି ମୁଁ ସେଇ
ତ୍ରିକୋଣାକାର ଫଳଗଛଟି ।
ମୋ'ର ସ୍ୱପ୍ନ ଓ ସ୍ୱାଧୀନତାର ସବୁତକ ଡାଳ
ଗୋଟି ଗୋଟି କରି ତମେ କାଟି ସାରିଲା ପରେ ବି
ମୁଁ ତମକୁ ଫଳ ଦେଇ ଲାଗିଛି
ନିରନ୍ତର ।

ପପ

# ଯେ କୌଣସି ବ୍ୟକ୍ତି ପାଇଁ

ତୁମେ ଯିଏ ହୁଅନା କାହିଁକି
ପୃଥିବୀରେ ଏମିତି ଜଣେ କିଏ ଅଛି
ଯାହାପାଇଁ ତୁମେ ସବୁଠୁ ବେଶି ପାରଙ୍ଗମ
ଆସ୍ଥା ରଖେ ଯିଏ ତୁମ ଉପରେ
ତୁମ ଦେଢବର୍ଷର କୁନି ଝିଅଟି ପରି ।
ତୁମେ ତା ଆଙ୍ଗୁଳିଟି ଧରିଥିଲେ
ଡଗ୍ ଡଗ୍ ଚାଲିଯାଏ ସିଏ
ନିର୍ଭୟରେ ।

ତୁମେ ଯିଏ ହୁଅନା କାହିଁକି
ତୁମେ ଆଜି ଚାଲିଗଲେ
ପୃଥିବୀରେ ଅନ୍ତତଃ ଜଣେ କିଏ ଅଛି
ଯିଏ କି ମନେ ରଖିବ ତୁମକୁ ।
ସିଏ ମା' ହେଉ ବା କନ୍ୟା
ପତ୍ନୀ ହେଉ ବା ପ୍ରେମିକା
କିମ୍ବା ହେଉ ପାଖ ଘରର ଲାଜକୁଳୀ ଝିଅଟି
ଯାହାକୁ ଦିନେ ଗୋଲାପଟିଏ ଉପହାର ଦେଇଥିଲ
ଫଗୁଣର ଫଗୁଲ ସନ୍ଧ୍ୟାରେ ।

ତୁମେ ଯିଏ ହୁଅନା କାହିଁକି
ପୃଥିବୀରେ ଏମିତି ଗୋଟିଏ କାମ ଅଛି
ଯାହାକି ତୁମ ବିନା
ଅନ୍ୟ କେହି କରିପାରିବେନି ।
ଫୁଲ କିଆରୀରେ କାମ କଲାବେଳେ
ମୋ'ର ମନେପଡେ
ସେଇ ଇଷତ୍ ନ୍ୟୁବ୍ଜ କମାରଟିର କଥା
ଯାହାର କାରୀଗରୀ ବିନା
ମୁଁ ହାତରେ ଧରିଥିବା ଖୁର୍‌ପିଟିର
ହୁଏତ ଅସ୍ତିତ୍ୱ ନଥାନ୍ତା ।

ଏଇ ବ୍ରହ୍ମାଣ୍ଡର
ଉଲ୍‌କା, ଛାୟାପଥ, ସୌରଜଗତ ଭିତରେ
ଏଇ ଗୋଲକର
ସାଗର, ପ୍ରାନ୍ତର, ମରୁ ଉଦ୍ୟାନ ମଝିରେ
କେଉଁଠି ଟିକିଏ ଶୂନ୍ୟସ୍ଥାନ ରହିଯାଇ ଥାଆନ୍ତା ।
ଏତିକି ଟିକିଏ
ତୁମେ ନଥିଲେ ।
କେହି ତାକୁ
ପୂରଣ କରିପାରିନଥାନ୍ତେ
ତୁମ ବିନା ।

ପପ

# ଯାତ୍ରୀ

ପାହାଡ଼ ଚଢିଲା ବେଳେ ଦେଖା ।
ଶୀତଳ ଝରଣା କୂଳ
ପରିଚ୍ଛନ୍ନ ଚଟି ଘର
ଚଉଦିଗେ ଶ୍ୟାମଘନ ଲତାର ମାଳଞ୍ଚ ।

କଳସୀର ସୁଗନ୍ଧି ପାଣିରେ
ପିପାସା ଦୂର କରି ପଚାରିଲି
"ନିଛାଟିଆ ବନଭୂଇଁ
ଜନପଦ ବେଶ୍ ଦୂର
ସରଞ୍ଜାମ ଆସ୍‌ବାବ୍
ବିଶେଷ କିଛି ନାହିଁ,
କଷ୍ଟ ହୁଏନି" ?
ସ୍ନିଗ୍‌ଧ ହସରେ
ମୁହଁ ଉଜ୍ଜ୍ୱଳ କରି କହିଲେ
"ତୁମର ବି ତ କିଛି ନାହିଁ,
ପର୍ଯ୍ୟଟନ ଉପଯୋଗୀ
ଏଇ ଝୁଲାମୁଣି ଟି ବ୍ୟତୀତ ।"

"ମୁଁ ଯେ ଯାତ୍ରୀ
ଆଜି ଏଇଠି ଅଛି
କାଲି ହୁଏତ ନଥିବି ।"

ଉତ୍ତର ଦେଲେ
"ମୁଁ ବି" ।

□□

# ଅବଳା

ତୁମେ ଇଚ୍ଛା କଲେ
ଦେହଳୀ ଓ ଚୌକାଠ ଡେଇଁ
ବେଶ୍ ବାହାରି ଆସି ପାରିବ ପଦାକୁ
ଖାଲି ଇଚ୍ଛା କଲେ ।
ଏରୁଣ୍ଡିବନ୍ଧ ସେପଟେ
ପାଉଁଜି ଓ ମଲର ଜଂଜିର ଫିଟାଇ
ତମେ ବେଶ୍ ଆସିପାରିବ
ଆରାମରେ ଚାଲି ଚାଲି
ରାଜପଥ ଯାଏ ।
ଗବାକ୍ଷ ଭିତରେ
ଚେନାଏ ନଭର ଲାବଣ୍ୟ ନଦେଖି
ତମେ ଦେଖି ପାରିବ
ଉପ୍‌ସିତ, ଅନନ୍ତ ନୀଳାକାଶ ।
ଘ୍ରାଣ ନେଇପାରିବ
ପ୍ରଶ୍ୱାସ ଭର୍ତ୍ତି
ବନସ୍ପତି ବାସ୍ନା ଭିଜା
ବନ୍ୟ ବତାସର ।
କେବଳ ଇଚ୍ଛା କଲେ ।
ତୁମେ ନିଜେଇ ଧରି ନେଇଛ

ଫୁଟନ୍ତା ଭାତର ଗନ୍ଧ
ଏକମାତ୍ର ଗନ୍ଧ ପୃଥିବୀର
ଜ୍ୱଳନ୍ତ ଚୁଲୀରେ ତାପ
ଏକମାତ୍ର ଉତ୍ତାପ ଜୀବନର
ତୁମେ ବେଶ୍ ପୋଷା ମାନିଯାଇଛ
ସାମାନ୍ୟ ପିକ୍ସୁଳିଟିଏ
କିମ୍ବା ମୁଠାଟିଏ ଭିକ୍ଷାବୁଟର ଲୋଭରେ ।

ବର୍ଷ ବର୍ଷ
ପଞ୍ଜୁରୀ ଭିତରେ ରହି
ତମେ ଉଡିବା ଇ ଭୁଲିଗଲଣି ।



# ଗୋଧୂଳି

ଗୋଧୂଳି,
ମିଳନର ଲଗ୍ନ
ଦିନ ଓ ରାତିର ।
ଦିବସର ଚୁମ୍ବନରେ
ବିଭାବରୀ କପୋଳର
ଲଜ୍ଜ୍ୟାରୁଣ ଆଭା
ଖେଳିଯାଏ ଦିଗ୍‌ଦିଗନ୍ତ
ରଂଗଢାଳି ମେଞ୍ଚା ମେଞ୍ଚା
ଥାକ ଥାକ ମେଘର ପାହାଚେ ।

ଏଇ ଆମ
ମଧୁବର୍ଷୀ ମୁହୂର୍ତ୍ତଟି
ଠିକ୍ ସେମିତି
ତା'ର ରଙ୍ଗଣିଫୁଲିଆ ରେଣୁ ନେଇ
ଚହଟି ଯାଆନ୍ତା କି
ଚକ୍ରବାଳ ଯାଏ
ସାରା ଆକାଶକୁ ଝଲ୍‌ମଲ୍ କରି ।
ଆଉ ତାକୁ ଦେଖି, ମୁର୍‌କି ହସି
ନଗ୍ରବଧୂମାନେ କହନ୍ତେ
କିଏ ଜଣେ ଭଲପାଉଛି
କାହାକୁ ।

□□

# ଅନନ୍ୟା

ଗଛ, ଲତା
ନଦୀ, ଝରଣା
ଚନ୍ଦ୍ର, ତାରା
ଓ ଏଇ ବସୁଧା
ବଡ ବେଶୀ ପୁରୁଣା ।

ଏକମାତ୍ର ନୂଆକିଏ ଜାଣ ?
କିଏ ସେଇ ଅନନ୍ୟା ?
କେବଳ ମୁଁ ।
ପୃଥିବୀ ସୃଷ୍ଟିହେବା ଦିନଠାରୁ ଆରମ୍ଭ କରି
ପ୍ରଳୟ ଘୋଟି ଆସିବା ପର୍ଯ୍ୟନ୍ତ
ଏଇ ଆଖି, ଏଇ ଓଠ
ଏଇ ସ୍ୱର ଓ ଏଇ ମନର
ଆଉ ଗୋଟିଏ ମଣିଷ
କେବେ ଜନ୍ମିନଥିଲା
କି ଜନ୍ମ ନେବନି ।

ଏତିକି ଯାହା ବୁଝିପାରିଲନି ତମେ ।



# ଧର୍ମ

ଯାହାର ଯାହା ଧର୍ମ ।

ଶିମିଳି ତୁଳାର ଚଗଲା ମଞ୍ଜିଟିଏ
ଦମ୍‌କା ପବନରେ ଦୋଳି ଖେଳି ଖେଳି
କେବେ କେମିତି ବିଶ୍ରାମ ନେଇଯାଏ
ବସୁମତୀ କୋଳରେ,
ଆଉ ଅଚିରେ ଗଜୁରିଯାଏ ତା'ର ଅଙ୍କୁର

ଦରଫୁଟା ଗୋଲାପର କଣ୍ଟାଟି
ଫୁଲ ତୋଳୁ ତୋଳୁ
କେବେ କେମିତି ବିନ୍ଧ କରିଯାଏ ଅନାମିକା
ଆଉ ପ୍ରଶିରାରୁ ଟାଣିଆଣେ
ରୁଧିରର ମୁକ୍ତାଫଳଟିଏ ।

ଅନୁରାଗୀ ମନଟିଏ ପାଇଲେ
ହୃଦୟ ଉପହାର ଦେଇଦିଏ
ତା'ର ସବୁତକ ଧିକି ଧିକି ସ୍ପନ୍ଦନ

ଯାହାର ଯାହା ଧର୍ମ ।

ooo

# ପୁତ୍ର

ଅମୃତ କଳସ ନିଗାଡ଼ି
ବିନ୍ଦୁ ବିନ୍ଦୁ ସୁଧା ଢାଳିଥିଲି ତୋ ଓଠରେ
ତୁ ଦେବୁ ବୋଲି ମୁହଁରେ
କଣିକାଏ ନିର୍ମାଲ୍ୟ ।

ଅବୋଲକରା ଶୈଶବରେ
ଶାସନ କରି ଶିଖାଇଥିଲି ବର୍ଣ୍ଣମାଳା
ତୁ ସ୍ୱର୍ କରି ଶୁଣାଇବୁ ବୋଲି
ଗୀତାର ପାବନ ପଦାବଳୀ ।

ଜବ୍‌ଜବ୍ ଜଳପାଇ ତେଲ ଘଷି
ସଶକ୍ତ କରିଥିଲି ତୋ ଶରୀର
ତୁ ସମ୍ଭାଳି ନେବୁ ବୋଲି
ମହାଯାତ୍ରାର ଭାର ।

ଜହ୍ନପରି ସୁନ୍ଦର ଗାଲରେ
ବୋକ ଦେଇଥିଲି ମମତାର
ତୁ ରଚିବୁ ବୋଲି ରୋଷଣୀ
ଘୃତାହୁତି ସହ ଅଗ୍ନିଶିଖାର ।



# ସ୍ୱର୍ଗ

ସେଠି କାଳେ
ମହମହ ପାରିଜାତ
କୋମଳାଭ ଆଲୋକର ଧାରା,
ରୁଦ୍ରବୀଣା ଠାରେ ଠାରେ
ସିଂହକଟି ଉର୍ବଶୀର ନୂପୁର ଡାକରା
ସେଠି କାଳେ ଅମୃତ ମଣୋହି
ନିଶିଦିନ ବୈଦୂର୍ଯ୍ୟ ଥାଳିରେ
ବିତାଏନି କେହି ସେଠି ଅତନ୍ଦ୍ର ରଜନୀ
ଜୀବନର ଅବ୍ୟକ୍ତ ଜ୍ୱାଳାରେ ।

ମୋ' ଲାଗି
ଏଇ ମାଟି, ଏଇ ବସୁମତୀ
ସ୍ୱର୍ଗଠାରୁ ମାୟାମୟ ବେଶି
ଗୁଚ୍ଛ ଗୁଚ୍ଛ ଯୂଇଫୁଲ
ସଭାରବେ ଶରତ୍ ଆକାଶେ
ବିହଗ ବେହାଗ ଗାଏ
ଯେହେତୁ ଏଇଠି ।
ସ୍ନେହର ଫୁଆରା ଛୁଟେ ଏଇ ଜମିପରେ
ପରସ୍ପର ପାଇଁ,
ଅକୁଳାନ ଅନଟନ ସତ୍ତ୍ୱେ
କେବଳ ଏଇଠି ଭୁଞ୍ଜେ ନିର୍ଦ୍ଧନ ଜନକ
ମଧ୍ୟାହ୍ନର ମୁଠାଟିଏ ଅନ୍ନ
ସାଥେ ନେଇ ସନ୍ତାନ ଓ ପ୍ରିୟ ପରିଜନ ।

□□

# ମୃତ୍ୟୁ

ଯଦି ଜଣେ କିଏ ଅଛି
ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନିପୁରରେ
ସଭିଙ୍କୁ ଏକାପରି କୋଳେଇ ନେବାପାଇଁ
ସଭିଙ୍କୁ ଏକାପରି ନରମ୍ ପାପୁଲିରେ ଆଉଁଷି
ଅନ୍ତ କରିଦେବା ପାଇଁ
ଅବିମିଶ୍ର ଜ୍ୱାଳା ଓ ଯନ୍ତ୍ରଣା,
ଯଦି ଜଣେ କିଏ ଅଛି
ସମ୍ବର୍ଦ୍ଧନା କରିବା ଲାଗି
ସମସ୍ତଙ୍କୁ
ଏକାପରି, ନିଜ ଇଲାକାରେ
ସିଏ ତ କେବଳ ତୁମେ

ଅପେକ୍ଷା
କେବେ ମୁଁ ଶୁଣିବି ତୁମ ବଂଶୀସ୍ୱନ
ପାଇବି ପାର୍ଥିବ ଛାଡି ଅପାର୍ଥିବକୁ

□□

# ଅଭିନ୍ନ ଭାଇନାଙ୍କୁ

ଆଜି କାହିଁକି ମନେପଡେ
ସବାରି ବାଡ ଧରି
ହିଡ କରେ କରେ
'ଗଉଡଙ୍କ ହୁଁ ମେରାଭାଇରେ' ଡାକ ସାଥିରେ
ବଡ ବଡ ପାହୁଣ୍ଡ ପକେଇ
କାନ୍ଧପକା ନାଲି ଗାମୁଛାରେ ଆଖି ପୋଛି ପୋଛି
ଆସିଥିଲ ଛାଡିବାକୁ
ବିଦା ହେଲାବେଳେ ।

ଆଜି କାହିଁକି ମନେପଡେ
ହାତଧରି ବାଟ କଢେଇ
ନେଇ ଯାଉଥିଲ ମେଲଣ ଓ ଯାନିଯାତ୍ରା
କିଣେଇ ଦେଉଥିଲ ଖଣ୍ଡଘୋଡା, ପେଁ'କାଳି,
ଫୋପଡ ମାରି ତୋଳି ଦେଉଥିଲ
ବଗୁଲିଆ ପବନରେ ଦୋହଲୁଥିବା
କଞ୍ଚାସୁଆଦି, କଷି ଆମ୍ବ
ବୈଶାଖର ଝାନ୍‌ଜିଳଗା ଦିପହର ବେଳେ ।

ଆଜି କାହିଁକି ମନେପଡେ
କେବେ କେମିତି ତମ ଘରକୁ ଗଲେ
ଭାଉଜର ନୋଥପିନ୍ଧା

ଊଈନାକର ଉପେକ୍ଷାକୁ ଅଗ୍ରାହ୍ୟ କରି
ଗାଁ' ଯାକ ଖୋଜି ବୁଲୁଥିଲ
କଖାରୁଫୁଲ, କଳମ ଶାଗ ଓ କଷି ଜହ୍ନି
ମୁଁ ସୁଖ ପାଏ ବୋଲି ।

ଆଜି ଇ ମନେପଡେ
କାହିଁକି ନା ଆଜି
ପଡିଶାଘର ବୁଢୀମା'ଟିକୁ
ପୁଅମାନେ କାନ୍ଧକୁ ଠିକ୍ ଉଠେଇନବା ପୂର୍ବରୁ
ଇଷତ୍ ନ୍ୟୁବ୍ଜ
ପକ୍ୱ କେଶର ଭାଇଟି
କାକର ପଡିଯାଇଥିବା ପାଦ ଦୁଇଟି ଧରି
କାନ୍ଦୁଥିଲା
'କେତେ ଖେଳ
କେତେ କଳି ପିଲାଦିନର
ସବୁ ଭୁଲି ଆଗରୁ ଚାଲିଗଲୁ କେମିତି' ?

ହିଂସା ହେଲା
ମୃତା ମହିଳାଟି ପ୍ରତି ।
ମୋ'ର ମହାଯାତ୍ରା ବେଳେ
ତମେ କଅଣ ଥରଟେ ଆସି
ମୋ' ଅଲରା ପାଟିଲା ବାଳତକ ଆଉଁଷି
ଏମିତି ଥରେ କାନ୍ଦି ପାରିବନି ?

□□

# ଉତ୍କଳିକା

ବେଳେ ବେଳେ ଭାବେ,
ସାରା ଜୀବନ ବାହାରେ ରହି
ଆସାମ, ଦିଲ୍ଲୀ ଓ ମିଜୋରାମ
ଶେଷ ବେଳକୁ
ମୁଁ କାହିଁକି ଫେରି ଆସିଲି ତୋ କୋଳକୁ ?

ହଠାତ୍ ମନେ ପଡିଲା
ତୋ ବୟସରେ ପହଞ୍ଚିଲା ବେଳକୁ
ପକ୍ୱକେଶୀ ବୋଉ ମୋ'ର
ସବୁବେଳେ ପାଟି କରୁଥିଲା
"ଡାକି ଆଣ ମୋ ପିଲାମାନଙ୍କୁ,
ପୁଅକୁ ବୋଷ୍ଟନ୍‌ରୁ
ଓ ଝିଅକୁ ରାଉର୍‌କେଲାରୁ
ଡାକିଆଣ
ଥାଆନ୍ତୁ ସଭିଏଁ ମୋ' ପାଖରେ" ।

ବୁଝି ପାରିଲି,
ତୁ' ବି ତାହେଲେ କେବେଦିନେ
ଠିକ୍ ଏଇଭଳି ପାଟିକରି
ହୁଏତ ଡାକିଥିବୁ ମତେ
ବାରମ୍ୱାର
ଫେରି ଆସିବା ପାଇଁ ତୋ କୋଳକୁ ।

ଋଋ

# କଲମ

ବଞ୍ଚିଗଲି
କେବଳ କଲମଟି ହାତରେ ଥିଲା ବୋଲି ।
ନହେଲେ
କିଏ ବା ଶୁଣିଥାଆନ୍ତା ମୋ ସଂଗୋପନ କଥା ?
କାହାକୁ ବା କହିଥାଆନ୍ତି
ମୋ ଲୁହ, ଲହୁ
ହତାଶା ଓ ଗ୍ଲାନିର କାହାଣୀ ?
କେମିତି ବା ଆଙ୍କିଥାଆନ୍ତି ଚିତ୍ରପଟ
କୋଟିକମ କରି
ମୋ ସ୍ୱପ୍ନର
ମୋ ସ୍ୱାଭିମାନର ?
କେମିତି ବା ମେଲିଧରି ଥାଆନ୍ତି ମୋ ଅନ୍ତରାତ୍ମାକୁ
ମିହିବୁଣା ଅକ୍ଷର ଜାଲରେ ?

ଖାଲି ହାତରେ କଲମଟି ଥିଲା ବୋଲି ସିନା !



# ସ୍ୱପ୍ନ

ମହାଶୂନ୍ୟ ବର୍ଣ୍ଣହୀନ,
ତେବେ ବି ନୟନ ଭାବେ
ଆକାଶ ନୀଳାଭ ।
ସୂର୍ଯ୍ୟାଲୋକ ସାତରଂଗା
ତେବେ ବି ଆଖିକୁ ଆମ
ଖରା ଦିଶେ ସଫେଦ୍ ।
ଚନ୍ଦ୍ରମା ତମସାମୟ
ତେବେ ବି କବିତା କହେ
ଜହ୍ନ ଢାଳେ ଜ୍ୟୋତ୍ସ୍ନା ।

ସବୁ କିଛି ଜାଣିଶୁଣି
ପ୍ରତାରିତ ହୋଇଯିବାରେ
ହୁଏତ କିଛି ଉନ୍ମାଦନା ଅଛି,
ଅବା କିଛି ନିଶା ।
ସେଇଲାଗି ବୋଧହୁଏ
ଏବେ ବି ଉହିଛି ବଞ୍ଚୁ
ଜୀବନର ଉଷର ଭୂଇଁରେ
କିଛି କିଛି ନୀଳ ସ୍ୱପ୍ନ
କିଛି କିଛି ସବୁଜ ପ୍ରତ୍ୟାଶା ।



# ବର୍ଷାଦିନ

ଆକାଶରେ ମାରାଥନ୍
କ୍ଷୀଣୋଦରୀ ମୌସୁମୀ ମେଘର
ସମୟ ଆସିଲେ
ଗର୍ଭିଣୀ ମେଘ ଜନ୍ମଦିଏ
ରାଶି ରାଶି ଆକାଶର ଫଳ
ଜଳକଣା ।

କେବେ କେମିତି
ଲୁଚକାଳି ଖେଳୁ ଖେଳୁ
କୃଷ୍ଣାଙ୍ଗ ମେଘମାନେ ହେଇଯାଆନ୍ତି ନିଖୋଜ୍,
ଆଉ ନଭର ନୀଳିମା ଚିରି ଫାଟିପଡେ
ଫିକା ଫିକା ରୂପେଲୀ କିରଣ ।
ସଦ୍ୟ ବେଶ ହୋଇଥିବା
ମଧୁବନ୍ତୀ କନ୍ୟା ପରି
ଝଲ୍‌ମଲ୍ କରି ଉଠନ୍ତି
ଦୀର୍ଘାଙ୍ଗୀ ଗଛମାନେ ।
ସତେ ଯେମିତି
ଦେହରେ ଅତରମିଶା ଅଁ'ଳା ତେଲ ବୋଳି
ଏବେ ଏବେ ବୁଡ ମାରିଛନ୍ତି ସେମାନେ
ବର୍ଣ୍ୟ ଝରଣାରେ ।

ପାଦତଳେ ଓଦାମାଟି
ଗେହ୍ଲୁଝିଅ ନଧର ଶରୀର ପରି
ନରମ୍ ଓ ମୁଲାୟମ୍ ।
ଘାସର ପରସ୍ତ ସବୁ
ସତେ ଅବା ସେ ଦେହରେ ଲେପ୍‌ଚିଥିବା
ଝୀନଶ୍ୟାମ ପଣତର ଶାଢ଼ି

ବର୍ଷା ଦିନ
ଆଷାଢ଼, ଶ୍ରାବଣ ।

ㅁㅁ

# ଦାଗ

କି ବୋକା ଥିଲି ସତେ !
ଭାବିଥିଲି
ପାଣିକନାରେ ପୋଛିଦେଲେ
ଲିଭିଯାଏ
ସବୁତକ ଆଙ୍କେବାଙ୍କେ ଗାର
ସୁଚିକ୍କଣ ସିଲଟ ପଟାରୁ

ଆଜି କିନ୍ତୁ ଦେଖେ
ଦିନ ଦିନ ଧରି
ପାଣିକନାରେ ରଗଡି ପୋଛି ସାରିଲାପରେ ବି
ମନ ସିଲଟ୍‌ରେ ରହିଯାଇଛି
ସ୍ପଷ୍ଟ ଗହୀରା ଗାରଟିଏ ।

□□

# ଶାନ୍ତି

ସୃଷ୍ଟିକର୍ତ୍ତା ସବୁ ଦେଲେ
ମଧୁବନ, ମୃତ୍ତିକା, ଆକାଶ
ମଲ୍ଲିଫୁଲ, ମଳୟ, ଗୋଧୂଳି
ଶଶ୍ୟ, ଫଳ, ଶ୍ରାବଣ ଓ ସୂର୍ଯ୍ୟ
ପ୍ରମତ୍ତ ଚାନ୍ଦିନୀ ଏବଂ ଶିଶିରର ସାଜ ।
ସବୁଦେଲେ
ପ୍ରିୟ ସନ୍ତାନ ମଣିଷମାନଙ୍କୁ
କେବଳ ଗୋଟିଏ ଜିନିଷକୁ ଛାଡ଼ି
ତାହା ଥିଲା
ତାଙ୍କ ଅକ୍ତିଆର୍‌ର ବାହାରେ ।

ଚମତ୍କାର ଉପହାରଟିଏ ।
କେବଳ ମଣିଷ ହିଁ ଦେଇପାରେ ମଣିଷକୁ
'ଶାନ୍ତି' ।

□□

# ମନ

ତୁମେ ମୋ'ର ସମୟତକ କିଣିନେଲ,
ଶାରୀରିକ ଉପସ୍ଥିତି ବି ।
ଏବଂ ତା' ସାଥିରେ
କିଛିଟା କାର୍ଯ୍ୟକୁଶଳତା ।
କିନ୍ତୁ କିଣିପାରିଲନି
ମୋ ବିଶ୍ୱାସ, ଭକ୍ତି ବା ଭଲପାଇବା ।

ଏସବୁକୁ କିଣିବାକୁ ହୁଏ
ପଇସା ଦେଇ ନୁହେଁ
ସମୟ ଦେଇ,
ମନ ଦେଇ ।
ନା ତମେ ସମୟ ଦେଇଛ
ନା ମନ ।

ㅁㅁ

# କଳସୀ

କଳସୀଟି କାମରେ ଲାଗେ
ଖାଲି ଥିଲେ,
ଖୋଲା ଥିଲେ ।
ତୃଷାତୁର ମଣିଷଟି ପାଇଁ
ଭରି ରଖିପାରେ ଦେହରେ
ସୁସ୍ୱାଦୁ ଓ ସୁଶୀତଳ
କ୍ଷୀର ଅବା ନୀର ।

ମନଭିତରେ
ତେଣୁ ଜାବୁଡ଼ି ଧରି ରଖନା
ଅଯଥା ଅନ୍ଧବିଶ୍ୱାସ ଓ ଆବର୍ଜନା
ଜମା କରି ରଖନା
ଜିଦ୍ଦି ଯେତେ ଧର୍ମ ଓ ଧାରଣା ।
ମନକୁ କାର୍ଯ୍ୟକାରୀ କରିବା ପାଇଁ
ତାକୁ ଖାଲି ରଖ,
ଖୋଲା ରଖ
କଳସୀ ପରି ।



# କାମ

ଈଶ୍ୱର ଯଦି
ଏଇ ମୁହୂର୍ତ୍ତରେ
ମତେ ଗୋଟିଏ କାମ କରିବାକୁ ଦିଅନ୍ତେ,
କାମଟି ଯାହା ହେଉନା କାହିଁକି
ମାଟି ହଣାଠାରୁ ମନ୍ତ୍ରପାଠଯାଏ
ମୁଁ ନିଶ୍ଚିତ ଭାବରେ ତାହା କରନ୍ତି
ଖୁସିରେ, ମନପ୍ରାଣ ଦେଇ, ଦ୍ୱିଧାହୀନ ଭାବରେ ।

ମୁଁ ଏବେ ଯେଉଁ କାମଟି କରୁଛି
ପ୍ରେମ ହେଉ ବା ପୂଜାର୍ଚ୍ଚନା
ସେଇ କାମଟି
ନିଶ୍ଚିତ ରୂପେ ଈଶ୍ୱର ମତେ ଦେଇଛନ୍ତି
ଏଇ ମୁହୂର୍ତ୍ତରେ କରିବା ପାଇଁ ।
କାହିଁକି ତେବେ ମୁଁ ତାହା କରିପାରୁନି
ଖୁସିରେ, ମନପ୍ରାଣ ଦେଇ, ଦ୍ୱିଧାହୀନ ଭାବରେ ?

ଠଠ

# ଯେକୌଣସି ନୂଆବର୍ଷରେ

କାହିଁ କିଛି ତ ଫରକ ନାହିଁ
କାଲି ଆଉ ଆଜି ଭିତରେ ।

ଆଗନ୍ତୁକ ଯାହା ପାଇଁ
ଦର୍ଜା ଖୋଲି ଚେଇଁଥିଲି
ନିଶାର୍ଦ୍ଧରେ
କାହିଁ ଆଶ୍ଲେଷି ନେଲାନି ତ ମୋତେ
ତା'ର ଆଶ୍ୱାଷି ହାତ ବଢ଼ାଇ ।
କାହିଁ ଶୋଷି ତ ନେଲାନି ଅଶ୍ରୁକଣା
ମୋ ସଜଳ ଆଖିପତାରୁ
ତାର ସତର୍କ ସ୍ପର୍ଶରେ ।
କାହିଁ କିଛି ତ ଫରକ ନାହିଁ
କାଲି ଆଉ ଆଜି ଭିତରେ ।

ଖାଲି ଯାହା ରହି ରହି ମନେହୁଏ
ଆଉଜି ଆସିଲା ଦିନ ଆଖି ବୁଜିବାର
ଆଉ ଟିକେ ପାଖକୁ ।



# ଲୁହ

ଶ୍ରାବଣର ସ୍ୱଚ୍ଛ ଖରା
ଅନୁପମ ନକ୍ସା କାଟେ
ଇନ୍ଦ୍ରଧନୁର
ଝିରି ଝିରି ବର୍ଷାବିନ୍ଦୁକୁ ନେଇ ।
ଅନ୍ତରାତ୍ମା ତାହେଲେ
କେମିତି ଦେଖିବ ବର୍ଣ୍ଣାଳୀ
ବିବିଧତାର
ବିନା ଲୁହ ଠୋପାରେ ?

□□

# ଛାଇ

ତାକୁ ଅଲଗା କରିପାରିବନି ନିଜଠାରୁ
ଯେତେ ଚେଷ୍ଟା କଲେ ବି ।
ସିଏ ରହିଥିବ ତମ ସାଥିରେ
ଅନବରତ, ଅହର୍ନିଶି ।
ଦିନବେଳେ ପାଖାପାଖି
ଆଉ ରାତିରେ
ଦେହଲଗ୍ନା ହୋଇ
ଠିକ୍ ମୋ’ ପରି ।

□□

# ମନ

ମୋ' ପାଖେ
ଏଯାବତ୍ ବନ୍ଧା ପଡିଥିବା ତୁମ ମନଟି
ଅନ୍ୟ କାହାକୁ ଦବ ଯଦି ଦେଇ ଦେଇଦିଅ ।
ଦୁଃଖ ନାହିଁ ।

କିନ୍ତୁ ମନେରଖ,
ତାକୁ ଖାଲି କହିଦେବ
ଯେ ସିଏ ପାଉଥିବା ଉପହାରଟି
ମୋର ଉଚ୍ଛିଷ୍ଟ ମାତ୍ର ।

□□

# ଦର୍ପଣ

ସଭିଙ୍କୁ ଆପଣାର କରିନେବାର
ଆଶ୍ଚର୍ଯ୍ୟ କ୍ଷମତା ।
ସଭିଙ୍କୁ ଛାତିରେ ପୂରେଇ ନେବାର
କିମିଆ ଆୟତ୍ତ କରି ନେଇଛି ସତେ ଅବା
ଶ୍ୟାମାଙ୍ଗୀ ହେଉ ବା ଗୌରୀ
ତନ୍ୱୀ ହେଉ ବା ପୃଥୁଳା
କିଶୋରୀ ହେଉ ବା ପ୍ରୌଢା
ସଭିଙ୍କ ଛବି ଧରି ରଖେ ଛାତିରେ ।
ବିଶ୍ୱାସ କରେ,
ବସୁଧୈବ କୁଟୁମ୍ବକମ୍ ।

□□

# କନ୍ଦୁକ

ଆର ଜନ୍ମକୁ
ମତେ କନ୍ଦୁକଟିଏ କର ।
ନାଲି ରଂଗର ସ୍ଫୂର୍ତ୍ତିଶୀଳ ନମନୀୟ କନ୍ଦୁକଟିଏ ।
ଯେମିତି କି
ଅଚାନକ ତଳେ କଚାଡ଼ି ହୋଇ ପଡିଲେ ବି
ପୁଣି ଥରେ ଉଠିଆସି ପାରିବି ଉପରକୁ
ଦ୍ରୁତ ଗତିରେ
ଆଘାତକୁ ପରୁଆ ନକରି ।

□□

# ଭୟ

ବହୁତ କିଛି ଅଛି ବୋଲି ଭୟଲାଗେ
ଚାପସରି, ବାଜୁବନ୍ଧ
ପାଟଶାଢି, ଭୂସଂପଦ
ଅନେକ କିଛି ଅଛି ବୋଲି ଭୟ ଲାଗେ ।
କାଳେ ନେଇଯିବ କିଏ
କାଳେ ହଜେଇଦେବି କେଉଁଠି ।

ସବୁ କିଛି ନେଇଯାଅ
ତାହେଲେ ନିର୍ଭୟ ହୋଇଯିବି ମୁଁ ।

□□

# ମହାପୁରୁଷ

ପ୍ରତ୍ୟେକ ମଣିଷ
ଯାହା ଯାହା କରିପାରେ
ନିଜର ବିଦ୍ୟା, ବୁଦ୍ଧି ବା ବଳ ଅନୁଯାୟୀ
ବେଶୀ ନୁହେଁ,
ଯଦି କେବଳ ସେତିକି କରିପାରନ୍ତା
ମନଦେଇ,
ପ୍ରତ୍ୟେକ ମଣିଷ ଭିତରେ
ତାହେଲେ ଚିହ୍ନା ପଡ଼ିଯାଆନ୍ତା
ବିଶ୍ୱସ୍ତ ଓ କର୍ମଠ,
ମହାପୁରୁଷଟିଏ ।

□□

# ପ୍ରେମ

ଭଲପାଇବା
ପଥର ଖଣ୍ଡ ପରି ତ ନୁହେଁ
ପଡିଛିତ ପଡିଛି
ଅନାଦି ଅନନ୍ତ ।

ଭଲ ପାଇବା
ରୁଟି ପରି ଗଢିବାକୁ ପଡେ
ପ୍ରତିଦିନ, ପ୍ରତିଓଳି
ନୂଆ କରି
ସଜ ଭାବରେ ।

□□

## ସଂକ୍ଷେପରେ କାନନ ମିଶ୍ର



ଜନ୍ମସ୍ଥାନ : କଟକ

ପିତା : ⁄ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ

ମାତା : ⁄ ଶ୍ରୀମତୀ ସୁରେଖା ତ୍ରିପାଠୀ

ଶିକ୍ଷା : ଏମ୍.ଏ. (ଇଂରାଜୀ), ଏମ୍.ଏ. (ଓଡ଼ିଆ),
ଏମ୍.ଲିଟ୍ (ତୁଳନାତ୍ମକ ସାହିତ୍ୟ) କୋବିଦ (ହିନ୍ଦୀ)

ପୁରସ୍କାର : ଓଡ଼ିଶା ସାହିତ୍ୟ ଏକାଡେମୀ, ପ୍ରଜାତନ୍ତ୍ର ପ୍ରଚାର ସମିତି, ଫକୀର ମୋହନ ସାହିତ୍ୟ ପରିଷଦ, ଭୁବନେଶ୍ୱର ପୁସ୍ତକ ମେଳା, ଭୁବନେଶ୍ୱର ସାମ୍ବାଦିକ ୟୁନିୟନ ଏବଂ ମାଣିକ ବିଶ୍ୱନାଥ ସ୍ମୃତିନ୍ୟାସ ଦ୍ୱାରା ପୁରସ୍କୃତା ।

ଏତଦ୍ ବ୍ୟତୀତ ସୁଧନ୍ୟା, ଆଗାମୀ ଶତାବ୍ଦୀ, ପ୍ରତିଭାସିକ୍ତ, ଝୁମୁକା, ସାହାଣମେଳା, ସକାଳ ପତ୍ରିକା ଏବଂ ଧ୍ୱନି ପ୍ରତିଧ୍ୱନି ସଂବାଦ ପତ୍ର ଦ୍ୱାରା ସମ୍ମାନିତା / ପୁରସ୍କୃତା ।

ରଚନାବଳୀ : ଶିଶୁ କବିତା : ❑ ହୀରା ମୋତି ମାଣିକ ❑ ଟୁପୁରୁ ଟୁପୁରୁ ବରଷେ ପାଣି ❑ କାଗଜ ଡଙ୍ଗା ❑ କାଇଁଚମାଳି ❑ ଫୁଲବନ ❑ ମନମଉଜ ❑ ହସଖୁସି

କବିତା : ❑ ତୀର୍ଥ ❑ ନବସାକ୍ଷରଙ୍କ ପାଇଁ କବିତା

ଗଳ୍ପ : ❑ ବହି ମେଳାରୁ ବୟଫ୍ରେଣ୍ଡ୍ ପର୍ଯ୍ୟନ୍ତ ❑ ଅଧାଲେଖା ଦସ୍ତାବିଜ୍ ❑ ମିଶ୍ରସ୍ୱାଦ ❑ ଆଖ୍ୟାନ

ଫିଚର : ❑ ଗପସପ ❑ ଭିନ୍ନସ୍ୱର

ଅନୁବାଦ : ❑ ସୂର୍ଯ୍ୟମୁଖୀର ସ୍ୱପ୍ନ (ଆସାମୀଜ୍ ଭାଷାରୁ ଅନୂଦିତ ଓଡ଼ିଆ ଉପନ୍ୟାସ)

ସମାଲୋଚନା : ❑ ଓଡ଼ିଆ ପଦ୍ୟ ମହାକାବ୍ୟର କ୍ରମବିକାଶ ।

ଇଂରାଜୀ ରଚନା : ❑ A Tryst with Life - (A collection of features)